# ରତ୍ନମାଳୀ ନାଟକ ।

ଶ୍ରୀ ଭିକାରୀଚରଣ ପଟ୍ଟନାୟକଙ୍କ ଦ୍ୱାରା

ପ୍ରଣୀତ

ଓ

ପ୍ରଥମବାର ପ୍ରକାଶିତ ।



PRINTED BY B. S. DAS,
Mukur Press,
Cuttack.
1915.

ମୂଲ୍ୟ ୦ ।୵ ଦଶ ଅଣା ।

## ଉତ୍ସର୍ଗପତ୍ର ।



ସାହିତ୍ୟରସିକ, ବିଦ୍ୟୋତ୍ସାହୀ, ସ୍ୱଶାସନପ୍ରବର୍ତ୍ତକ

ଶ୍ରୀଲ ଶ୍ରୀଯୁକ୍ତ ତାଳଚେରାଧିପତି

ଶ୍ରୀ କିଶୋରଚନ୍ଦ୍ର ହରିଚନ୍ଦନ ମହୋଦୟଙ୍କ

କରକମଳରେ

(ଏଙ୍କ ସମ୍ମୁଖରେ ଉତ୍ସାହ ପ୍ରାପ୍ତି ହେତୁ)

କୃତଜ୍ଞତାର

କ୍ଷୀଣ ନିଦର୍ଶନ ସ୍ୱରୂପ

ଏହି ନାଟକଖଣ୍ଡି

ଅର୍ପିତ ହେଲଁ ।

ବଶଗ

ରଚକ ।

# ରତ୍ନମାଳୀ ନାଟକ ।

## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

ପୁରୁଷ—

ଗୋବର୍ଦ୍ଧନ—ଦୁର୍ଦ୍ଧ ଦସ୍ୟୁ ।

ସୁବଳ ଓ ସୁଦାମ—ଦୁଇ ବନ୍ଧୁ ।

ଶ୍ରୀରଚନ୍ଦ୍ରଦେବ—ସୌରଭୂମି ନରପତି ।

ଜଳବନ୍ତସିଂହ—ଜଣେ ଅତିମଣକାରୀ ( Invador ) ।

ଧର—ସୁଦାମର ପିତା ।

ଗଦାଧର—ସୁବଳର ପିତା

ଦୁର୍ଜ୍ଜନସିଂହ—ରତ୍ନମାଳୀର ରୂପାନ୍ତର ।

ମନ୍ତ୍ରୀ, ଗୋବର୍ଦ୍ଧନଙ୍କର ପୁତ୍ରଗଣ, ରାଜ୍ୟପାରିଷଦବର୍ଗ, ପଣ୍ଡୁଆନାମକ ଭୃତ୍ୟ, ଦ୍ୱାରୀ, ଦଳପତିଗଣ, ପ୍ରହରୀବର୍ଗ, ନଗରବାସୀଗଣ, ଦୂତଗଣ, ସୈନିକଗଣ, ଗ୍ରାମ୍ୟଲୋକମାନେ, କୃଷକ, ଅଭିଯୋଗକାରୀମାନେ, ପାତ୍ର ମିତ୍ରଗଣ, ଚଣ୍ଡାଳଗଣ, କୈବର୍ତ୍ତ, ଅଣାଦାର, ଘୋଡାବାଲ, ଛତ୍ରଧାରୀ, ଚାମରଧାରୀ, ଭୂଇଆ, ବେହରା, ଖଣ୍ଟୁଆ ଇତ୍ୟାଦି ।

| ପତ୍ରାଙ୍କ ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|
| ୩୮—୧୫ | ଭଲ... | ଭସ |
| ୩୧—୧୫ | ଚିଉର... | ଚିତର |
| ୬୧—୧ | ବହୁଳେ... | ବହୁଳେ |
| ,,—୨୦ | ଥିବାରେ... | ଥିବରେ |
| ,,—୨୩ | ଘାପିଶ... | ଘାଣ୍ଠି |
| ୭୪—୧୮ | ଯେଗୀ... | ଯୋଗୀ |
| ୭୭—୧୦ | ସ୍ୱାନ୍ତ... | ସ୍ୱାନ୍ତ |
| ,,—୧୪ | ଅସ... | ଅସି |
| ,,—୧୭ | ଶଲବ... | ସଲବ |
| ୮୮—୨୨ | ସ୍ୱୟ... | ସ୍ୱଂୟ |
| ୫୦—୭ | କ୍ଷୁତଦାସ... | କ୍ରୀତଦାସ |
| ୫୨—୧୩ | ଧନ... | ଧନୁ |
| ୫୭—୧ | ପ୍ରୀତି... | ପ୍ରୀତୀ |
| ୫୫—୭ | ଭକ୍ତ... | ଭକ୍ତ |
| ୧୦୨—୩ | ସେମା... | ଜେମା |
| ୧୦୭—୨ | ଶତ... | ଶତ |
| ୧୦୮—୧୭ | ଦକ୍ଷ... | ଦକ୍ଷ |
| ୧୧୧—୧୩,୧୫ | ସେମା... | ଜେମା |
| ୧୧୩—୨୧ | ଛକୁ... | ଛାକୁ |
| ୧୧୫—୭ | ସେବକ... | ସେବକ |
| ୧୧୬—୧ | ମନ୍ତ୍ରି... | ମନ୍ତ୍ରୀ |
| ,,—୨୦ | ଭୂଜା... | ଭଜ |
| ୧୨୦—୭ | ବଭାଉ... | ବଭାଷ |

# ରତ୍ନମାଳୀ ନାଟକ ।

---

## ପ୍ରସ୍ତାବନା ।

( ଦୁଇଟି ବାଳିକାମାନଙ୍କର ପ୍ରବେଶ ଓ ନୃତ୍ୟ )

ଗୀତ ।

ରାଗ—ଝିଞ୍ଜୋଟି—ଆଡ଼ତାଳୀ ।

ଅହା କି ସୁନ୍ଦର, ଅହା କି ମଧୁର
ନାମଟି ତୁମର ପିଅର ।

ନାମକୁ ତୁମର କି ସ୍ୱରେ ଗାଇବୁଁ,
କି ଅବା ଯନ୍ତ୍ରର ସାଙ୍ଗରେ ବାଇବୁଁ,
ଯାହା ତା ଅମର ସବୁତ ତୁମର
ତୁମେତ ଭରତା ଦେହର ।

ତୁମର ହୁକୁମେ ଫୁଲଟି ଫୁଟୁଛି
ତୁମର ହୁକୁମେ ଝାଡ଼ିଲ ଲୋଟୁଛି,
କିଏବା ଉଠୁଛି କିଏବା ପଡ଼ୁଛି
ତୁମନାମେ ଅଠ ପହର ।

G. S.

---

ଏକାଧିପତ୍ୟରେ ମୋର ହେବ ପ୍ରତିଦ୍ୱନ୍ଦ୍ୱୀ ?
ତେବେ ମନ ନମାନେ ପ୍ରବୋଧ,
ପୁତ୍ର ସ୍ନେହ, ବାତ୍ସଲ୍ୟ ମମତା—
ଅବିଚ୍ଛେଦ୍ୟ ପର୍ବ ହେଉ

(ପୁତ୍ରମାନଙ୍କର ପ୍ରବେଶ, ଅବନତ ଓ ଅଧୋମୁଖେ ଦଣ୍ଡାୟମାନ ଏବଂ ଗୋବର୍ଦ୍ଧନ ଆନନ୍ଦେ ପୁତ୍ରମାନଙ୍କର ଓଷ୍ଠ ସ୍ପର୍ଶ କରୁ କରୁ)

ଓରେ ବତ୍ସ ! ଓରେ ବାବା !
କହ ଆଗେ କହ ମୋତେ
ପାଇଅଛ ତାହାରକୁ ?
ଆଣିଅଛ ଭୁଲାଇ ସଙ୍ଗତେ ?
କେତେ ଧନ ଅଛି ସଙ୍ଗେ ତାର ?

୧ମ ପୁତ୍ର—ନାହିଁ ପିତ ପାଇ ନାହୁଁ ତାହାରକୁ ।

ଗୋବ—(ବିରକ୍ତ ଭାବେ)
ପାଇ ନାହଁ !
ଜଣେ ସୁଦ୍ଧା ନ ପାଇଲ
ସାତଦିନ ହେଲା ଆଜି ?
କାହିଁ ତେବେ ଆସିଲ ପଳାଇ ଗୃହେ ?
ଦେଖାଇବା ପାଇଁ ମୁଖ ? (ବ୍ୟଙ୍ଗସ୍ୱରେ)
ଓହୋ ଜାନ୍ଥିଲି ଦେଖିବା ପାଇଁ କି ପଦ !
ନିର୍ଲଜ୍ଜ ବେହାୟା ଲୁଚ୍ଚ

୨ୟ ପୁ—ଯଗି ଯଗି ଅଳିଯାଏ ଗଲା ସାତଦିନ,
ଜଣେ ସୁଦ୍ଧା ନ ଦେଖିଲୁଁ ପାନ୍ଥ ଏ ପଥରେ ।

ଗୋବ—ତାହାଲାଗି ତେବେ ଭଲ ହୋଇ ବ୍ୟାକୁଳିତ
ଆସିଲ ପଳାଇ ଗୃହେ ?

ଅହୋ ! ସ୍ୱଦରେ ସ୍ୱନ୍ଦଣୀ ବୃନ୍ଦ
ବଉଦ୍ଧରେ ଲୋଟିଲେନ ଅବନୀମଣ୍ଡଳ,
ଢୋଲ ଧଇଲାକୁ ଗାଙ୍କୁ
ଅସିଉନ୍ତି ଧାଇଁ ଛାଡ଼ ପ୍ରିୟତମଗଣ ।

ଅମ୍ଭୃ ପୁ—ପିତ ! ଅକାରଣ ଏ ଗଞ୍ଜନା ;
ଏ ଗହନବନପଥେ ଅମ୍ଭ ସ୍ତ୍ରୀମାନ
ସ୍ୱଦେଶଦେଶାନ୍ତରେ ଭ୍ରଷ୍ଟ ହେଲଣି କଷ୍ଟମ୍ଭ,
ରେଣୁ ପାନ୍ଥ ନ ଚଳନ୍ତି ଆଉ ଏ ମାର୍ଗରେ,
ହେଲଣି ଏ ମାର୍ଗ ରୁଦ୍ଧ ।

ଗୋବ—(ବ୍ୟଙ୍ଗସ୍ୱରେ)
ମାର୍ଗ ରୁଦ୍ଧ ! ମାର୍ଗ ରୁଦ୍ଧ !
କୁଳାଙ୍ଗାର କଳଙ୍କ ସ୍ତୁଡ଼ାଙ୍କ ।

(ସକ୍ରୋଧେ) ହେଲେ ହେଉ ମାର୍ଗରୁଦ୍ଧ,
ଅମ୍ଭ ଗୃହଦ୍ୱାର ରୁଦ୍ଧ ଅଛି ସମସ୍ତଙ୍କ,
ଗୃହମଧ୍ୟେ ପ୍ରବେଶ କରିବ,
କରିବ ଭୋଜନ ଏଣୁ,
ପରୀ ମୁଖ ଦର୍ଶନ କରିବ ;

(ବ୍ୟଙ୍ଗସ୍ୱରେ) କେମନ୍ତେ ରେ କର୍ଲଜ୍ଜ ସ୍ତୁଡ଼ାଙ୍କ !
କଳ କଳ ପରୀ ପାଶେ
ହଲଇବ ମୁଣ୍ଡ ଯାଇ—
ନାହିଁ ନାହିଁ ନ ପାଇଲୁଁ କଷ୍ଟ ।

(ସକ୍ରୋଧେ) ଏହ୍ୱନି ଯାଅ ଫେଇ ସର୍ବେ,
ନ ଗୁହିଁବ ମୁଖ ମୁଁ କାହାର,

ଉତ୍ସୃଜିଲ ସମସ୍ତେ ମୋହର,
ଯାଅ ଫେର ସେହିବନେ,
ମର କଷ୍ଟ ଯାହା ଇଚ୍ଛା କର ସେହି ସ୍ଥାନେ,
ନ ସେବିଣ ପାନ୍ଥ ସଙ୍ଗେ ନ ଫେରିବ ଗୃହେ ।

୧ମ ପୁତ୍ର—ପିତ ! ଶାନ୍ତ ହୁଅ, କ୍ଷମା କର,
ଯାଉଅଛୁଁ ପୁଣ ଏହିକ୍ଷଣି,
ପିତୃ ଆଜ୍ଞା ଶିରୋଧାର୍ଯ୍ୟ,
ନ ସେବିଣ ପାନ୍ଥ ସଙ୍ଗେ ନ ଫେରିବୁଁ ଗୃହେ ।
(ପୁତ୍ରମାନଙ୍କର ଅଭିବାଦନ ଓ ପ୍ରସ୍ଥାନ)

ଗୋବ—(ସ୍ୱଗତ)
ଗଲେ ଫେର ପୁତ୍ରଗଣ ;
କାଲି ହେଲେ ଯାଇଥାନ୍ତେ,
ଯାଇଥାନ୍ତେ ହେଲେ ଖୋଜନାନ୍ତେ,
କଡ଼ା କଟୁ ବଚନ ମୋହର,
ଲାଗିଥିବ ମନେ ବ୍ୟଥା । (କିଞ୍ଚିତକାଳ ନୀରବେ ଚିନ୍ତା)
ନାହିଁ, ଲାଗୁ ବ୍ୟଥା, ଯାଉନ୍ତୁ ସେ,
ନ ଲାଗିଲେ ମନେ ବ୍ୟଥା
ନ ହେବେ ତତ୍ପର କାର୍ଯ୍ୟେ ;
କହୁଅଛୁ ଏବେ କଥା ଛଡ଼ାଇ ଛଳାଇ
ଏହୁଥର ପ୍ରାଣପଣେ କରିବେ ଯତନ ।
(ଗୋବର୍ଦ୍ଧନଙ୍କର ପ୍ରସ୍ଥାନ)

(ପଣ୍ଟୁଆର ପ୍ରବେଶ)

ପଣ୍ଟୁ—(ସ୍ୱଗତ) ଆଉ ହବ ନାହିଁ । ଆଉ ଏ ଶୃଙ୍ଖଳ ଧରିବ ନାହିଁ । ନାହିଁରେ ବାବା । ଦେଖୁଛ ତ ସାତ ଦିନହେଲା ବଣ

ଦ୍ୱାରେ ପଡ଼ି ପଡ଼ି ଅଛି ଏବେ ପଦସ୍ତବ ଯାଏ ନାହିଁ, ଗୋଷ୍ଠୀ
ହାତରେ ଓଠ ଯାଏ ପାଣି ପଡ଼ି ନାହିଁ, ଫେର ଯା କଣକୁ ।
ଇଏ ଫେର କୁହ ପାଇବ, ମୁଁ ତ ପାଇବ ନାହିଁ, ମୋର
ପଛରେ ଗୃହର ନ ହେଲା । (ହରର ପ୍ରବେଶ)

ହବ—ଅରେ ଯୋଗନୀଝିଅ ! ଏତେବେଳଯାଏ ଯାଇ ନାହୁଁ ?
ଭାଇ ସାଆନ୍ତମାନେ ବାହାର ଗଲେଣି, ବୁଢ଼ା ସାଆନ୍ତ
ଶୁଣିଲେ ତୋ ପିଠିରୁ ଚମଡ଼ା ଛଡ଼ାଯିବ ।

ପଦ୍ମ—ଆହା ! ମୋର ଜୀବନ ସଙ୍ଗିନୀ ! ତୋହର ଲାଗିତ
ଏତେବେଳଯାଏ ଯାଇପାରୁ ନାହିଁ, ତତେ ନ ଦେଖି
କେମିତି ଯିବ ? ତୁଅକୁ ଯିବ ?

ହବ—ନଇଶୁଅ ସବୁବେଳେ ଖାଲି ମୋ କଥାକୁ ଟାହୁଲ କରିବ,
ଅରେ ଚୁଲପଶାଟି ! ବୁଢ଼ା ସାଆନ୍ତ ରାଗରେ ଜଳୁ ହୋଇ
ବହୁଛନ୍ତି, ଭାଇ ସାଆନ୍ତମାନେ ଦାଣ୍ଡେ ଦାଣ୍ଡେ ସେଠୁଅଡ଼େ
ଫେରଗଲେ ; ତୁ ଗାତଶୁଆଟି ଏତେବେଳଯାଏ ନ ଯାଇ
ଅଡୁଆ ବେଳ ହଉରୁ କୋଉ ଗାତରେ ପଶିବୁ ?

ପଦ୍ମ—ଆହା ହା ହା ହା ହା ! କି ମଧୁର ବାଣୀଗୁଡ଼ିକ ! ଅମୃତର
ଧାରା ! ଝର ଝର ବରଷି ଯାଉଛି ।

ଗୀତ ।

ପ୍ରାଣସଙ୍ଗିନୀ ମୋର
ତତେ ନ ଦେଖିଲେ ମହୀ ଅନ୍ଧାର ଘୋର ।
ଉଣ୍ଟର ସମାନ ନାଶା, ମେଷ କଣ୍ଠ ଜିଣି ଭାଷା
ପାଶୋରି ପାରିବ କିଲେ କ୍ଷଣେ ମୁଁ ତୋର ।
ତୁ ସଖି ବକ୍ରଦନ୍ତୀ, ଦେଖିଲେ ଶ୍ରୀ ଅଙ୍ଗକାନ୍ତି
ହୀନ ଜୀବ ହୋଇହେଁ ସିନା ହୁଅନ୍ତି ଶ୍ୱେର ।

ଦୂତ—ଯୋଗନିଷ୍ଠା ମୋ କଥାକୁ ଅନ୍ୟ ବୁଝିଲଣି ।

ପଣ୍ଟୁ—ନାହିଁ, ନାହିଁ, କେବେଁ ନା ; ମା ! କୃପାମୟି ! କୃପାକରି ତମ କଥାକୁ ଅନ୍ୟ ବୁଝିବ ! ଏଥି ଫେର ଗୋଟା କଥା ! ତେମେ, ତେମେ, ତୁ, ତେମେ ମୋର ହୃଦୟର ଉଜ୍ଜ୍ୱଳ, ମୋର ଜୀବନର ଔଷଧ ; ତୋ ବାଳର ବଦନଶ୍ରୀ ମୁଁ କଣରେ ଭୁଦାରେ ଯେତେଣେ ଅନାଏ ତେତେଣେ ଦେଖେଁ । ଆହା ହା ! କି ରୂପ ଶ୍ରୀ କଉ ! କାହା ସଙ୍ଗରେଁ ତୁଳନା କରିବ ! ଅଗ୍ନି ! ଆହା ହା ( କଳ୍ପନା ମୁଣ୍ଡରଙ୍ଗ ) ସୁନ୍ଦରର ଗନ୍ଧ ( କଳ୍ପନା ଗନ୍ଧ ) ଗଣ୍ଡ ଦୁଇଟିରେ ବଧାତା ଦୁଇଟି ମଣ୍ଡାପିଠା ଶକ୍ତି ଥୁ ପଗ ! ଏବ ବଧାତାଙ୍କ କୌଶଳ କି ପୁରୁଷ ସାଧାରଣ ବଢ଼େଇର କୌଶଳ ତା କଏ କହି ପାରିବ !

ଦୂତ—ନନ୍ଦଶୁଆ ! ଯିବୁଟି ଯା ନ ହେଲେ ଛଷ୍ଟୁ ଶରେ ମୁଣ୍ଡ ଭଙ୍ଗି ଦେବ ।

ପଣ୍ଟୁ—ଯାଉଛି, ଯାଉଛି, ମା ! ଦମୟନ୍ତି ! ଯାଉଛି, ତମ୍ଭକୁ ଦଣ୍ଡବତ, ତମ ଭଇ ଭଗାର ସମସ୍ତଙ୍କୁ ଦଣ୍ଡବତ, ଯାଉଛି ( ପ୍ରସ୍ଥାନ ଓ କ୍ଷଣପରେ ପୁନଃ ପ୍ରବେଶ ) ସଜନି ! ମୁଁ ଯାଉଛି, ତୁ ଥା ମୁଁ ଯାଉଛି । (ପ୍ରସ୍ଥାନ)

ଦୂତ—ଯାଉଛି କାମ ଦାମ ସାରଦଏ । (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ—କାନନ ମଧ୍ୟସ୍ଥ ରାଜପଥ ।

( ଆଶାଦାର, ଶୋଣ୍ଟାଦାର, ଛତ୍ରଧାରୀ, ଚାମରଧାରୀ, ଭୃତ୍ୟ, ରାଜପାରିଷଦ ଓ ସୁବଳ ପ୍ରବେଶ । )

ସୁବଳ---ରାଜକୁମରେ, ଛାଡ଼ ମୋତେ, ଘେନ ମୋ ମିନତି,
କାନ୍ଦୁଥିବ ଭାଇ ମୋର ଆକୁଳ ମୋ ଲାଗି
ଏକାକୀ ସେ ଘୋରବନେ,
ମୋହବଳା ଅହା ଭାଇ ହେବନ କାତର,
ଛାଡ଼ ମୋତେ, ଯିବି ମୁଁ ତା ପାଖେ,
ଅହା ଭାଇରେ ! ଭାଇ ସୁଦାମରେ !
ବନେ ବନେ ରାଜଦୂତେ
ବନ୍ଦ ଦେଇଯାନ୍ତି ମୋତେ,
ଏ ବାରତା ଭାଇ ତୋତେ କେ ଦେବ ଏ ବନେ !

ରାଜଧା—ନ ହେବେ ଅଧୀର ବୃଥା,
ଭଗ୍ନପୃଷ୍ଠେ କର ଅନ୍ୱେଷଣ
ରାଜପୁରେ ଚାଲନ୍ତୁ, ମହିମା,
ଗଲେ ପୁରେ, ବାର୍ତ୍ତା ତାଙ୍କ ଦେବେ ଏହିକ୍ଷଣି,
ଚାଲ ଅଶ୍ୱ, ଗଲେ ଅଶ୍ୱାରୋହୀ,
ଆଗନ୍ତୁ ସେ ମିଳିଥିବେ ଯାଇ ସେହିସ୍ଥାନେ ।

(ସମସ୍ତଙ୍କର ପ୍ରସ୍ଥାନ)

(ସୁଦାମ ପ୍ରବେଶ)

ସୁଦାମ (ସ୍ୱଗତ)—ଭାଇ ସୁବଳରେ !
କେମନ୍ତେ ରହିବୁ ଭୁଲି ଏ ଦୀନ ସୁଦାମେ,

କାହିଁ ଗଲୁ, କାହିଁ ରୁ ରହିଲୁ ଭାଇ ;
ବାଲ୍ୟକାଳୁ ଆସିଯାଏ,
କ୍ଷଣେ ହୋଇ ନ ଥିଲୁଁ ଅନ୍ତର,
କରୁଁ ସଦା ଏକତ୍ରେ ଭୋଜନ,
ଏକ ଶଯ୍ୟା ଏକତ୍ରେ ଭ୍ରମଣ,
ଦୁଇମାତ୍ର ରୂପ ଭେଦେ
କିନ୍ତୁ ଏକ ସମସ୍ତ କ୍ରିୟାରେ,
କେଉଁଦୋଷେ ଆଜି ଆହା ଏ ଘୋର ବିପିନେ
ଘଟାଇଲୁ ବନ୍ଧୁ ଏ ବିଚ୍ଛେଦ,
କିବା ଭାଇ ତ୍ୟଜିଲୁ କି ଘୃଣା ହୋଇ
ଅପରାଧୀ ମଣି ମୋତେ କୌଣସି କାରଣେ ?
ବନ୍ଧୁତା କାଳରୁ ଭାଇ
କେତେ କେତେ ଅପରାଧ କଲି ମୁଁ ନ ଥିବ ?
ଦିନେ ବୋଲି ଧରିଣ ନ ଥିଲୁ ମନେ,
ଆଜି ମନେ କି ହେଲା ତୋହର ?
କିପାଁ ତ୍ୟଜିଗଲୁ ମୋତେ ଗହନ କାନନେ ?
କ୍ଷଣେ ନ ଦେଖିଲେ ଭାଇ ହେଉରେ ଅଧିର,
କେମନ୍ତେ ସେ ଭାବ ଆଜି ହେଲୁ ରୁ ବିସ୍ମୃତ ?
ଭାଇରେ କିପାଁ । ଆଉ ଯିବା ଗୃହେ ?
ତୋ ବିନା ମୁଁ ଗୃହେ ଯାଇ କି ସୁଖ ଭୁଞ୍ଜିବି ?
କେମନ୍ତେ ମୋ ଯିବ ଦିନ (ରୋଦନ)
ହେଁ ହେଁ ହେଁ ହେଁ ଭାଇରେ !
କି ବୋଇବି ମାତାଙ୍କୁ ତୋହର ?
ଏକା ଯେ ଦେଖିଲେ ମୋତେ,

ଆକୁଳେ ପୁଚ୍ଛିବେ ଆସି
ବାପ ସୁଦାମରେ ! ଏକା କିପାଁ ଫେରିଲୁ ତୁ ?
କାହିଁଗଲା ସୁବଳ ତୋହର ?
କି ବୋଲି ମୁଁ ପ୍ରବୋଧିବି ଅଧୀର ମାତାଙ୍କୁ ?
ଏକମାତ୍ର ପୁତ୍ରନିଧି ହୃଦରେ ତାଙ୍କର,
କେମନ୍ତେ ସେ ତୋହବିନା ଧରିବେ ପରାଣ ?
କେମନ୍ତେ ମୁଁ ଏ ବାରତା ଦେବିରେ ତାହାଙ୍କୁ ?
ନ ଫେରିବି ଗୃହେ କଦାଚନେ,
କଟାଇବି ଏ ଜୀବନ
ଭ୍ରମି ଭ୍ରମି ତୋହର ଉଦ୍ଦେଶ୍ୟେ,
ନ ଭେଟିଲେ ତୋତେ କେଭେ ନ ଫେରିବି ଗୃହେ ।
ଅହେ ବନଦେବୀଗଣ !
କର ମୋତେ ଦୟା ତୁମ୍ଭେମାନେ,
କହ ତୁମ୍ଭେ ଦେଖିଛକି ସୁବଳକୁ କେହି,
ବନ ବୃକ୍ଷ ! ବନ ଲତା !
ବନଚାରୀ ବିହଙ୍ଗ ନିକର !
ତୁମ୍ଭେ କେହି ଶୁଣିଛକି ସୁବଳ ବାରତା ?
ଦେଖିଛକି କେହି କାହିଁ ବନ୍ଧୁକୁ ମୋହର ?
କହ ମୋତେ ଦୟାକରି—
ଆସୁଛନ୍ତି କିଏ ଏହି,
ସୁବଳ କି ସୁବଳ କି ମୋର !
ନା, ନୋହେ ତ ସୁବଳ, କେ ଏମାନେ

(ଗୋବର୍ଦ୍ଧନଙ୍କ ପୁତ୍ରଗଣ ଓ ପଣ୍ଡୁଆର ପ୍ରବେଶ)

୧ମ ପୁ—କିଏ ତୁମ୍ଭେ ବନଚାରୀ ?
କି ମାନସେ ଆଗମନ ଏଥି ?

ନାମ ଧାମ କି ଅବା ତୁମ୍ଭର ?
ପିତା ମାତା କିଏ ତବ ?
କହ ବେଗେ ଫିଟାଇ ସକଳ ।

(ପନ୍ଥୁଆର ନାନାପ୍ରକାର ଅଙ୍ଗଭଙ୍ଗିରେ ଇଙ୍ଗିତକରଣ)

ସୁଦାମ—ପିତା ମମ ସାମନ୍ତ ଶ୍ରୀଧର,
ମୋ ନାମ ସୁଦାମ, ଗୃହ ବଳାସ ନଗର ।

୩ୟ ଓ ୪ର୍ଥ ପୁ—ନମସ୍କାର ନମସ୍କାର

୫ମ ପୁ—ନମସ୍କାର ଭଗ୍ନୀପତି

ସୁଦାମ—ଦେଖିଛ କି ସୁବଳକୁ କେହ ?
ସୁବଳ କି ଅଛି ତୁମ୍ଭ ଗୃହେ ?
ଶୁଣିଛ କି ନାମ ଧାମ ତାହାଠାରୁ ମୋର ?
କହ ବେଗେ ଫିଟାଇ ସଂଶୟ ।

୨ୟ ପୁ—ନ କର ଛଳନା ଆଉ,
ଅସ ବେଗେ ସଙ୍ଗତେ ଆମ୍ଭର ;
ଛାଡ଼ିଥିଲ କେବେ ଗୃହ ?

ସୁଦାମ—ଗୃହ ? ଆଜି ଦଶଦଶ,
ଅସିଥିଲି ଭୁଲି ବନ, ମୃଗୟା ଉଦ୍ଦେଶ୍ୟେ,
କାଳକ୍ରମେ—

୩ୟ ପୁ—ସାତ ଦଶ ହେଲା ଆଜି
ଫେରଅଛୁଁ ଆମ୍ଭେ ସର୍ବେ ଗୃହକୁ ତୁମ୍ଭର ।

ସୁଦାମ—ଗୃହକୁ ଆମ୍ଭର—ବଳାସ ନଗରୁ ?

୪ର୍ଥ ପୁ—ବଳାସ ନଗରୁ
ବିଳମ୍ବ ନ କର ଆଉ, ଚାଲ ବେଗେ ।

୨ୟ ପୁତ୍ର—ତୁମ୍ଭ ହେତୁ, ଭ୍ରାତାଗଣ ସର୍ବେ ଆମ୍ଭେ,
—ପକ୍ଷାଧିକ ହେଲା ଆଜି—
ତୁମ୍ଭଠୁଁ ଛାଡ଼ି ସଦ୍‌ଦ୍ୱାର ।

ସୁଦାମ—ସବଳ କି ପଢ଼ିଅଛ ଶପଥରେ କାହିଁ ?
କରିଅଛ ଗୃହେ ତାକୁ ଆଶ୍ରୟ ପ୍ରଦାନ ?

୩ୟ ପୁ—ସବଳ ଦୁର୍ବଳ ଆମ୍ଭେ ନ ଜାଣୁଁ କାହାକୁ,
ହେଉଛି ବିଳମ୍ବ ତୁମ୍ଭେ ଆସ ବେଗ କରି,
ଶ୍ରମ ଆଜି ସଫଳ ଆମ୍ଭର ।

୪ର୍ଥ ପୁ—ତୁମ୍ଭର ଦୋଷରୁ ବୃଦ୍ଧ ଜନକ ଆମ୍ଭର
ଭାଳି ଭାଳି ହେଲେଣି ସେ ଜୀର୍ଣ୍ଣ ଶୀର୍ଣ୍ଣ ଅଙ୍ଗ,
ମାତାଙ୍କର ଅଶ୍ରୁପୂର୍ଣ୍ଣ ନୟନ ଯୁଗଳ
ନ ଶୁଖଇ ଦିବା ନିଶି,
ପାଞ୍ଚଜଣ ପୁତ୍ର ଆମ୍ଭେ,
ଏକମାତ୍ର କନ୍ୟା ପିତାଙ୍କର,
ପିତା, ମାତା, ଭ୍ରାତା, ଭ୍ରାତୃବଧୂ
ସମସ୍ତଙ୍କ ସ୍ନେହ ତାହାଠାରେ,
ତାହା ଦୁଃଖେ ଦୁଃଖ ସମସ୍ତଙ୍କ ;
କି କହିବ ତୁମ୍ଭଙ୍କୁ ମୁଁ,
ଚାଲ ଆଗେ ଗୃହେ ତୁମ୍ଭେ,
ରମଣୀଏ ଦେବେ ପ୍ରତିଫଳ,
ବାଳକ ସରିଏ ମିଳି ଦେବେ ଯୋଗ୍ୟ ଶାସ୍ତି ।

ସୁଦାମ—(ସ୍ୱଗତ) ବୁଝି ନ ହୁଅଇ କିଛି ଏ ଗୂଢ଼ ରହସ୍ୟ !
କିଏ ପତି ! କିଏଁ ସତୀ !
କିଏ ତାହା ଭଗ୍ନୀପତି !

କେ ଅବା ଖାଳକପଟୀ ।
କିଏ ଅବା ଏ ସକଳେ !
କି ମାନସେ ଡାକନ୍ତି ବା ମୋତେ !
କେମନ୍ତେ ବୁଝିବି ଏହା
କାହିଁଗଲ ସୁବଳ ମୋହର ?
(ପ୍ରକାଶ୍ୟେ) କ୍ଷମା କର କ୍ଷମା କର,
କହ ମୋତେ ଏ ଗୂଢ଼ ରହସ୍ୟ ମର୍ମ,
କିଏ ଅବା ତୁମ୍ଭେମାନେ ?
କପାଁ ମୋତେ ବିପ୍ରପତି କର ସମ୍ବୋଧନ ?

୩ୟ ପୁ—ଶୁଣିନାହିଁ ଗୋବର୍ଦ୍ଧନ ସାଧବଙ୍କ ନାମ ?

ସୁଦାମ—ଶୁଣୁଅଛି ଏହି ଏ ପ୍ରଥମ ।

୪ର୍ଥ ପୁ—ପ୍ରଥମ ଶୁଣିଲ ଆଜି ?
ଶ୍ୱଶୁର ସେ ଅଟନ୍ତି ତୁମ୍ଭର,
ଶୁଣିନାହିଁ ପିତାଙ୍କ ବଦନେ ?
ମାତା ତବ ନ କହନ୍ତି ଗଳ୍ପଛଳେ କେବେ ?
ଗ୍ରାମବାସୀ ନ କହନ୍ତି କେହି ?
ବଡ ଅଚମ୍ବିତ ଏ ବଚନ ।

ସୁଦାମ—(ସ୍ୱଗତ) କି ଆଶ୍ଚର୍ଯ୍ୟ; କେ ମୋହର ଶ୍ୱଶୁର !
କି କହନ୍ତି ଏ ସକଳେ !
ମୋ ବିବାହ ମୋତେ ଅଗୋଚର !
ମୋହ ହେତୁ କେ କଲା ବିବାହ ?
ଭ୍ରମାସକ୍ତ ଅଟନ୍ତି ଏ ସର୍ବେ ।
(ପ୍ରକାଶ୍ୟେ) କ୍ଷମା କର ଶୁଣ ମୋ ବଚନ,
ହୋଇ ନାହିଁ ଆଜିଯାଏ ବିବାହ ମୋହର,

ସୁଦାମ ନାମରେ କେହ ଥିବେ ଅନ ବ୍ୟକ୍ତି,
ତାଙ୍କ ପରି ମଣିଛନ୍ତ ଭ୍ରମେ ଏ ଅଧୀନେ,
ଭଗ୍ନୀପତି ନୋହେ ମୁଁ ତାହାର ।

୨ୟ ପୁ—ଛି ଛି ଛି ଛି ଲଜ୍ୟା ହେଉ ନାହିଁ ଶୁଣି ?
ବ ଭହବା ଆଉ ସେ ଗୁଜାକ ?
ଅମ୍ଭେ ସର୍ବେ ଅତ୍ୟନ୍ତ ଲଜ୍ଜିତ ।

ସୁଦାମ—କ୍ଷମା କର, ଜାଣେ ମୁଁ ନିଶ୍ଚୟ
ହୋଇ ନାହିଁ ବିବାହ ମୋହର ।

୧ମ ପୁ—ଭଗ୍ନୀଙ୍କର ତୃତୀୟ ବର୍ଷରେ ଆମ୍ଭ,
ପିତା ମାତା ଗଲେ ଗୋଦାବରୀ
ତୀର୍ଥ ସ୍ନାନ ଅଭିଳାଷେ ତହିଁ,
ତୁମ୍ଭ ପିତା ମାତା ମଧ୍ୟ
ଯାଇଥିଲେ ତୁମ୍ଭ ସଙ୍ଗେ ସେହି ତୀର୍ଥ ସ୍ଥାନେ ,
ତାଙ୍କ ସଙ୍ଗ ପିତାଙ୍କର ଜନ୍ମିଲା ବନ୍ଧୁତା,
ତୁମ୍ଭେ ମଧ୍ୟ ଥିଲ କ୍ଷୁଦ୍ର ଶିଶୁ,
ପଞ୍ଚ ଷଷ୍ଠ ବର୍ଷ ମାତ୍ର ସେ କାଳେ ତୁମ୍ଭଙ୍କୁ,
ବନ୍ଧୁତାର ସ୍ମରଣାର୍ଥେ
ଅର୍ପିଲେ ଦୁହିତା ପିତା ତଥା ତୁମ୍ଭ କରେ ;
ତିଳମାତ୍ର ନାହିଁ ତୁମ୍ଭ ମନେ ?

ସୁଦାମ—କ୍ଷମା କର, କିଛିହିଁ ନ ଜାଣେ ମୁହିଁ,
ଏବେ ବୋଲି ଶୁଣି ନାହିଁ
ପିତାଙ୍କର ଗୋଦାବରୀ ତୀର୍ଥ ଯାତ୍ରା କଥା ।

୧ମ ପୁ—ଶୁଣିନାହିଁ ? କି ଆଶ୍ଚର୍ଯ୍ୟ !
ମନେ ଥିବା ନୁହଇ ସମ୍ଭବ ।

ଥିଲ କ୍ଷୁଦ୍ର ଶିଶୁ, ବନ୍ଧୁ ବଳ ହେଲଛ ଅତି ।

ସୁଦାମ—(ସ୍ୱଗତ) ମିଥ୍ୟା ! ସବୁ ମିଥ୍ୟା ! ସବୁ ମିଥ୍ୟା !
ଏତେ ଏତେ ଏ ବୃତ୍ତାନ୍ତ
ନ ଶୁଣିଲି କେବେ ମୁହିଁ ?
ନ ଜୁଏ ପ୍ରତ୍ୟୟ ମୋର,
ଦସ୍ୟୁଗଣ ଜନ୍ତୁ ଏ ସର୍ବେ,
କପଟେ ଦେଖାନ୍ତି ଏହୁ କପଟ ସମ୍ବନ୍ଧ,
ଡାକନ୍ତି ଭୁଲାଇ ମୋତେ ନେଇ କବଳରୁ !
(ପ୍ରକାଶ୍ୟ) କ୍ଷମା କର, କ୍ଷମା କର,
ଅଭୁଲ ମୁଁ ବନ୍ଧୁ ହେବୁ ମୋର,
ଯାଉଛି ମୁଁ ସନ୍ଧାନେ ତାହାଙ୍କ,
ଫେରିବା ବେଳରୁ ନଶ୍ଚେ
ବନ୍ଧୁ ସହ ଯିବି ତୁମ୍ଭ ପୁରେ ।

୪ର୍ଥ ପୁ—ବୃଥା ବାକ୍ୟେ ନାହିଁ ପ୍ରୟୋଜନ,
ଯହିଁ ଇଚ୍ଛା ତହିଁ ଯାଅ
ସେହିଯାଅ ସଙ୍ଗତରେ ଯହିଁରୁ ତୁମ୍ଭର,
ଲୋକ ନିନ୍ଦା, ଦେଶ ନିନ୍ଦା, କୁଳ ନିନ୍ଦା
ପିତା ମାତା ସତତ ଡାକର ।

୫ମ ପୁ—ହଲେ ଯଦି ଯିବ ଗୃହ,
ତା ନ ହେଲେ ପିତାଙ୍କର ଅଛୁ ଅନୁମତି
ବଳକାରେ ସେହିଯିବୁଁ ତାଙ୍କ ସନ୍ନିଧାନେ ।

ସୁଦାମ—(ସ୍ୱଗତ) ବିଷମ ସଙ୍କଟ ଏହା,
କୌଣସିପ୍ରକାରେ ଖାଉ ନାହିଁ ଏ କପଟୁଁ ;
ନିସ୍ତର ବୁଝିଲି ଏଥୁଁ ।

ସୁବଳ ବ ପଣ୍ଡସ୍ୱବ
ଏହାଙ୍କର ହସ୍ତେ ଏହ ସ୍ଥାନେ,
ଭାଇରେ ! ଯାହା ହେଲା ତୋହ ଗତି
ତାହାହିଁ ହେଉ ମୋ ଗତି,
ଭାଇରେ ସୁବଳ ଇଚ୍ଛା ପ୍ରଭୁଙ୍କର !
(ପ୍ରକାଶ୍ୟେ) ଚାଲ ତେବେ ଦେଖାଯାଉ
ଦେଖିଲେ ମୁଁ ବୁଝିବି ସକଳ ।

ପଣ୍ଡୁ—(ସ୍ୱଗତ) ମୁଁ କହୁଥିଲି ଅବା ଇଏତ ଅଇସ ପୁର ନାହିଁ, ଅଇସ ପୁର ଅଛି ତ ଏତ ଜନ୍ମରୁ ଅଧେ ଭୋଗ ହେଲାଣି ; ଚାଲ ବାବା ଚାଲ ।

(ସମସ୍ତଙ୍କର ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ—ଗୃହପ୍ରାଙ୍ଗଣ ।

(ହରୁର ପ୍ରବେଶ)

ହର—ବୁଆରଷ୍ଟା ଆଗେ ପହିଲ ହଏ (ଦ୍ୱାରମାର୍ଜନ କରୁଁ କରୁଁ) ନଇଥିଆ ପଣ୍ଡୁଆ ବେଇଦନ ହେଲା ନାହିଁ, କାମଦାମ ସବୁ ଘରଗୁଡ଼ରେ ହୋଇଯାଉଛି । ଯୋଗନାଶିଆ ଆଇଲେତ ଶାଳ ଛଡ଼ା ମଡ଼ା କରୁ କରୁ ସବୁଦି କାମ ଭନସନ୍ତ ଲାଗିବ । ହୋଉଦନ ଅଇଁଠ ହେଲାଣି । ଶୁକରବାର, ଶନବାର, ରବବାର, ସଁବାର, ମଙ୍ଗଳବାର ଆଜି ପାଞ୍ଚଦନ ହେଲା ଗଲା । ଆଉ ବେଇଦନ ଲାଗିବ କଏ ଜାଣିଚି । ନାଗୁ ଯେତେଦନ ଲାଗିବ, ନ ଆସୁ, ମୁ କାମ ସାରଦିଏ

(ପଣ୍ଡୁଆର ପ୍ରବେଶ)

ପଦ୍ମ—ପ୍ରାଣେଶ୍ୱର ! ଅହା ହା ହା ହା ହା ଅହା ହା ହା ହା (ହସି ହସି)

ହର—ନଇସ୍ୱଆର ନଉନୁ ଆଇଲ, ଯାହିଁକିଆ ପାଟିରେ ଅଛୁ ଅଟି ପଡ଼ସ୍ତଗଲା ।

ପଦ୍ମ—(ହସି ହସି) ଅହା ହା ହା, ଅହା ହା ହା, ପାପଧନ ହେଲା ଗଲ, ତୋ ଗୁଣ ପକାଉଛ, ତୋ ମୁଣ୍ଡ ଛୁଉଁଛ, ମରେ ପାପବରଷ ପର ଲାଗିଛ ; ଆଣ ଆଣ ପହଁସ୍ତ ଦେ (ମାର୍ଜନୀ ଗ୍ରହଣ)

ହର—ଏଇଡିକି କହୁସ୍ତଲ ପର ନଇଣ୍ଥି ଯାଇଲାର—

ପଦ୍ମ—

ଗୀତ ।

ଅହା ଜୀବଧନ ମୋର
ସେ କଥା ମନେ ନ ଧର
ତୋ ବରହେ ଏ ପରାଣ ସଦା ଅଧୀର ।
ଅଚିଲ ମୁଁ ଅଗହୋଇ
ତୋ ମୁଖ ଦେଖିବା ପାଇଁ
ତୁ ଯେବେ ଜଉରୁ ପର ହେବ ଜାହାର ।
ରଣେ ବଣେ ଯାଏଁ ଯେଣେ
ମନପ୍ରାଣ ତୋ ଚରଣେ
ତୁ ପୁଣି ଭୁଷିଲେ ଦଣ୍ଡନ ଅକାର ।

ହର—ହେଲ ଭୁତାଘାନ୍ତ ଅଇଲେଣି (ହରଙ୍କ ପ୍ରସ୍ଥାନ, ପଦ୍ମଙ୍କ ପୁନଃ ଅଭିବାଦନ ଓ ଗୋବର୍ଦ୍ଧନଙ୍କ ପ୍ରବେଶ)

ଗୋବ—ଭରେ ପଦ୍ମ ଅ ଭ ଖବର । (ପଦ୍ମଙ୍କ ହୃଦଗତ ବ୍ୟକ୍ତିଙ୍କ ପ୍ରତି ଅଙ୍ଗୁଳିନିର୍ଦ୍ଦେଶ, ଅଭିବାଦନ ଓ ପ୍ରସ୍ଥାନ)

ଆସିଲେଣି ପୁତ୍ରଗଣ,
ସଙ୍ଗେ ତାଙ୍କ ସୁବଳଟି,
ଯାନ୍ତୁ ସେନ୍ତୁ କ୍ରୀଡ଼ା କରେଁ ।
(ପୁତ୍ରଗଣ ଓ ସୁଦାମର ପ୍ରବେଶ)

୧ମ ପୁ—ବସିଛନ୍ତି ପିତା ଏଠୁ, ଏଣୁଟ ଚୁମ୍ବର ।
(ସମସ୍ତଙ୍କର ଅଭିବାଦନ)

ପାଇଅଛୁଁ ସୁଦାମଙ୍କୁ
ଆଣିଅଛୁଁ ସଙ୍ଗେ ତାଙ୍କୁ ଏଠା ।

ଗୋବ—ଆହା ବତ୍ସ ! ବତ୍ସ ସୁଦାମରେ !
ତୃପ୍ତହେଲା ଏ ନୟନ ଏତେଦିନେ ଆଜି !
ମାତା ତବ ସତତ ଅଧୀରା । (୧ମ ପୁତ୍ର ପ୍ରତି)
ବାବା ଡାକ ଯା ମାତାଙ୍କୁ ।(୧ମ ପୁତ୍ରର ପ୍ରସ୍ଥାନ)
କାନ୍ଦି କାନ୍ଦି ଦିବାନିଶି ନ ଯାଏ ତାଙ୍କର,
ଭାବୁଛନ୍ତି ଅବିରତ ତୁମ୍ଭର ଭାବନା,
ତବ ତାଙ୍କ ପରାଣ ଶୀତଳ ।
(ପ୍ରଭାବତୀଙ୍କର ପ୍ରବେଶ)

ପ୍ରଭା—ବାପ ମୋର ! ନିଧି ମୋର !
ଏତେଦିନେ ପଡ଼ିଲୁ ତୋ ମନେ ?
କେଡ଼େ ନିଦାରୁଣ ତୁ ରେ
ବାପ ମା କି ଗଢ଼ିଥିଲେ ପାଷାଣେ ତୋ ହୃଦ ?
ଆହା ବଡ଼ ଭାଗ୍ୟ ଆଜି ମୋର,
ପରତେ ନ ଥିଲା ମନେ
ଦେଖିବି ଏ ମୁଖ ଶଶୀ ଆଉ ଏ ଜୀବନେ ;

ପୂର୍ଣ୍ଣ ହେଲା ବ୍ରତ ଆଜି,
ପୂର୍ଣ୍ଣ ହେଲା ମନସ୍କାମ ମୋର ।
ଅଣେ ଡାକ ବଧୂ ମାତାଗଣେ
ଯେତନଯାନ୍ତୁ ଅନ୍ତଃପୁରେ ।

(ପ୍ରହରୀର ପ୍ରସ୍ଥାନ)

ସୁଦାମ—(ସ୍ୱଗତ)

ଏ ଯେ ବଡ଼ ଅଦ୍ଭୁତ ବ୍ୟାପାର !
ଜାଗ୍ରତ ନା ନିଦ୍ରିତ ମୁଁ !
ସ୍ୱପନ ନା ସତ୍ୟ ଏ ସକଳ !
କିବା ଏହା ଯାଦୁକର ଯାଦୁବିଦ୍ୟା !
ନାହିଁ ଆସି ପ୍ରବେଶିଲି !
ମୃତ ନା ଜୀବିତ ମୁହିଁ !
ଶକ୍ତି ମୋର–ଅଙ୍ଗ–ଅଙ୍ଗ–ନାହିଁ–ନାହିଁ
ବିବେକ–ବିଚାର–ନାହିଁ–କିଛି ନାହିଁ !
ମନ–ଅଚଳ ଅଚଳା !
ଏଡ଼ ଦଶା ହେଲା ମୋର !

(ବଧୂ ମାତାମାନଙ୍କର ପ୍ରବେଶ ଓ ଗୋବର୍ଦ୍ଧନ ଏବଂ ପୁତ୍ରମାନଙ୍କର ପ୍ରସ୍ଥାନ ।)

ଗୀତ ।

ଆସିଲେଣି ଆସ ରସିକ ନାଗର
ଦେଖିବା ଆସ ସଜନି
କେ କପେ ଉଷାସେ କେ ଧାଏଁ ହରଷେ
ପ୍ରଭାତ ହେଲେଁ ଯାମିନୀ
ଦେଖ ଲୁମ୍ବିବ ପଦ୍ମିନୀ । (ଫୁଲଧୁନୀ)

ସୁଦା—(ସ୍ୱଗତ)

ତାବା ପଣ ନାହିଁ ! ପୁଣ ଅଛି !
ଛଳେ ବଳେ ମାତୃଗୀ ରାକ୍ଷସୀ !
ଗ୍ରାସିବେଁ ମୋ ପ୍ରାଣ ଆଜି !

୧ମ ବଧୂ—ନାହିଁଥିଲ ଏତେକାଳ ରସିକ ନାଗର ?
ପଡ଼ିଅଛୁ ଏବେ ମନେ ?
ଯୁବତୀ ରମଣୀ ତବ
ଝୁରି ଝୁରି ସହଲେଣି ଅତି ତୁମ୍ଭଲାଗି ;
କି କଠିଣ ହୃଦ ତବ
କେମନ୍ତେ ପାସୋରି ତୁମ୍ଭେ ଥିଲ ଏତେଦିନ ?

୨ୟ ବଧୂ—କେ ବୋଲେ ସେ ରସିକ ନାଗର ?
ଅରସିକ, ଅନାଗର
ଅପୁରୁଷ ଅଟନ୍ତି ସେ ।
୩ୟ ବଧୂ—ତା ନ ହେଲେ କାଣ ଭଗ୍ନି
ଷୋଡ଼ଶୀ ରୂପସୀ ଉର୍ବଶୀ ସମାନ ପରୀ
ପାସୋରି ସେ ବସିଥାନ୍ତେ ?

୪ର୍ଥ ବଧୂ—ଆଇଲନ୍ତୁ ସେ ତାଙ୍କ ପାଶେ,
ତାଙ୍କ ଶାସ୍ତି ସେହି ଦେବେ ତାଙ୍କୁ
ରସନାଥ ଅସ ଏବେ ଅନ୍ତଃପୁରେ ।

୧ମ ବଧୂ—ଆସ ଆଉ ନ କର ବିଳମ୍ବ,
ଦଅ ତାଙ୍କୁ ଦରଶନ,
କର ତାଙ୍କ ପରାଣ ଶୀତଳ ।

୨ୟ ବନ୍ଧୁ—ବିଳମ୍ବେ କି ପ୍ରୟୋଜନ ?
ଭାବୁଅଛ କିସ ଏବେ ମନେ ?
( ସମସ୍ତଙ୍କର ଅସ୍ତ୍ରବର, ସୁଦାମଙ୍କ
କର ଧାରଣ ଓ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ—ରତ୍ନମାଳୀଙ୍କ କକ୍ଷ ।

(ରତ୍ନମାଳୀ ଉପବିଷ୍ଟା)

ଗୀତ ।—

ବିଧାତାଙ୍କ ସୃଜନ ବିଧାନ
କେ ବୁଝିବ ମାନବ ଅଜ୍ଞାନ ।
(ଅହେ) ବନେ ବନ ଫୁଲମାନ
ତୁମ୍ଭ ସଙ୍ଗେ ମୁଁ ସମାନ
ମୋ ସଙ୍ଗେ ତୁମ୍ଭେ ସମାନ
ଲଲାଟ ଲିଖନ ଆମ୍ଭ
ଦୁହଙ୍କ ସମାନ ।
ବନେ ବନେ ଦୋହେଁ ରହୁଁ
ଦଇ ଅନାଥନ ହୋଇଁ
ମନକଥା ମନେ କହୁଁ
କନ୍ତ୍ର ବେଗେଁ ତୁ ପଳାଉ
କଠିଣ ମୋ ପ୍ରାଣ ।

ରତ୍ନ—ଆହା ! ଜାଣିଲିଣି ଏ ଜୀବନ
ଯିବ ଏହୁ ପରକାରେ,
ଦାରୁଣ ଦହନ ।
କର୍ପା ତୁ ରେ ଦେଖିଲି ଏ ଜନମ !

ଦେଇ ଏ ଜନମ ପୁଣି
କାହିଁପାଇଁ ଏ କପାଳେ ଲେଖିଲୁ ଏ କର୍ମ ?
ଯଦି ବୋଲ ପୂର୍ବ କର୍ମ ଦୋଷ ଏ ମୋହର,
ତେବେ କି ଅଛି ଶାନ୍ତି
ନ ଥିଲା ମୋ ଲାଗି କିଛି ?
ହା କପାଳ—(ଦୀର୍ଘନିଃଶ୍ୱାସ ତ୍ୟାଗ ଓ କ୍ଷଣକାଳ ନୀରବ)
କେ ଶୁଣିବ ଦୁଃଖ ମୋର !
କାହାଗେ କହିବ ମୋର ହୃଦୟ ବେଦନା !
ତରୁ ତୃଣ ପାଷାଣେ ମୁଁ କରି ଆଲିଙ୍ଗନ
ଦେଖାଇବି ମାନସ ଯାତନା !
ଶୁଣାଇବି ତାଙ୍କୁ ମନସ୍ତାପ,
ଶୁଣାଇବି ଅନନ୍ତ ଗଗନେ !
ହେ ପ୍ରତାପ ! କରି ରୁଦ୍ଧ ଶୁଣ ମୋ ରୋଦନ,
ଶୁଣି କିପାଁ କହ ହେଉ
କ୍ଷଣେ ମ୍ଳାନ କ୍ଷଣକେ ପ୍ରଖର ?
ପୁଣି ଥରେ ଥରେ ଶିଖା କରି ଅନ୍ଦୋଳିତ
କି ବୋଲୁ ତା ବୁଝି ଜାଣୁ,
ତୋ ସଙ୍କେତ ବୁଝିବାକୁ ନାହିଁ ମୋ ଶକତି ;
ହେଲାଣି ସମୟ ଆସି,
ପିଣ୍ଡାରୀ କର୍ମକୁ ଅଙ୍କି ଅଛନ୍ତି ଯୁବକ ଏକ,
ପାପହସ୍ତେ ଇହ ଜନ୍ମ ହେଲା ତାଙ୍କ ଶେଷ ।
ଅହୋ ! କିପାଁ ଆଜି ଦେଖିବା ବେଳରୁ ତାଙ୍କୁ
ମନ ମୋର ହେଉଛି ଅସ୍ଥିର,
ଶରୀର ଅବଶ, ଜୀବନ ଚଞ୍ଚଳ । (ନୀରବେ ଚିନ୍ତା)

ଅଭାଗୀ ତୁ ପାପିୟସୀ,
ପାପ ହେତୁ ଜନମ ତୋହର,
ତୁ ଲୋ ଭଜ ଏ ପାଦପେ
ଏ ଦୁର୍ଦ୍ଦଶା ବଢ଼ାଉ ମାନସେ ?
କରୁ ଆଶା, ନରକ ତୁ, ହେତୁ ଦେବ ଲାଗି,
ଦେବତା ଯେ ବାସ୍ତବରେ ଦେବତା ସେ
ମର୍ତ୍ତ୍ୟଧାମେ ଏ ମୂରତି
ଦେଖା ନାହିଁ, ଶୁଣା ନାହିଁ କେବେ !
ହେଲ ଆସିଲେଣି, ଅଭାଗି ମୁଁ—

(ଦାସୀ ଓ ସୁଦାମଙ୍କର ପ୍ରବେଶ)

ଦାସୀ—ଯାଅ ଏବେ ରସିକ ନାଗର
ଏହିତ ବରସିକା ସୁନ୍ଦରୀ
ବସିଛନ୍ତି ଅପେକ୍ଷାରେ,
ଦିଅ ତାଙ୍କୁ ରସ ପରିଚୟ
ଥାଅ ତୁମ୍ଭେ, ହେଉଛୁ ମେଲାଣି ।

(ଦାସୀର ପ୍ରସ୍ଥାନ)

(ରତ୍ନମାଳୀଙ୍କର ଉତ୍ଥାନ ଓ
ଶଯ୍ୟା ପ୍ରତି କର ନିର୍ଦ୍ଦେଶ)

ସୁଦା—(ସ୍ୱଗତ)
ଆହା ! ବାସ୍ତବରେ ଷୋଡ଼ଶୀ ରୂପସୀ,
ସମ ନୋହେ ଉର୍ବଶୀ ନବାସୀ ତାଙ୍କୁ,
ରତିଦେବୀ ତୁଚ୍ଛ ଏ ରୂପକୁ,
ନୁହନ୍ତି ଏ ମର୍ତ୍ତ୍ୟକନ୍ୟା,
ଅଟେ କେହୁ ଦେବ କନ୍ୟା

ବଳାଇ ମାନସ ଏହି ମର୍ତ୍ତ୍ୟ-ଉପଭୋଗେ
କୌତୁହଳେ ଧରିଛନ୍ତି ମାନବୀ ମୂରତି,
ଲାବଣ୍ୟ ପ୍ରତିମା ସତି·
ଜ୍ୟୋତିର୍ମୟ ! ଆହା ଅନୁପମ !
ବଦନ ମଣ୍ଡଳ ! ଆହା ! ଆହା !
ମର୍ତ୍ତ୍ୟଧାମେ ନାହିଁ ତା ତୁଳନା !
ଗଣ୍ଡସ୍ଥଳ—ସ୍ମରଧନୁ ରଙ୍ଗଭୂମି,
ଆହା ! ଏ ମୋହନୀ, କାହା ମନ ମୋହନୀ ଏ !
କିଏ ସେହି ଭାଗ୍ୟବନ୍ତ
ଯାଙ୍କ ହୃଦପଦ୍ମେ ଏହି ଲକ୍ଷ୍ମୀଙ୍କ ଆସନ !
କହୁଛନ୍ତି ବାଲ୍ୟକାଳେ ଗୋଦାବରୀ ତଟେ
ଛାଡ଼ିଥିଲେ ଏ ଅଧମେ ଚରଣେ ଏହାଙ୍କ ;
ହେଲେ ହୋଇଥିବ ସତ୍ୟ,
କହିଥିଲେ କହିଥିବେ କେବେ ପିତା ମାତା,
ଅଜ୍ଞାନ ମୁଁ ଭୁଲିଥିବ ସବୁ,
ଏତେ ଲୋକ ସମସ୍ତେ କି ମିଥ୍ୟାବାଦୀ !
ନା, ଅଛି କିଛି ସତ୍ୟ ଏଥି,
ସତ୍ୟରେ ମୁଁ
(ପ୍ରକାଶ୍ୟ) ପ୍ରିୟତମେ ! ଜୀବନ ସର୍ବସ୍ୱ !
ପରିହର ଅଭିମାନ,
ଏ ଅଧମ କୃତଦାସ ଶ୍ରୀପଦେ ତୁମ୍ଭର,
କ୍ଷମାକର ଅପରାଧ କ୍ଷମାଗୁଣେ ତବ ;
ଅଜ୍ଞାନ ମୁଁ, ଭୁଲିଥିଲି,
ଅତି ବାଲ୍ୟକାଳେ ଏ ଘଟଣା,

ଗୋଦାବରୀ କଥା ତନ୍ତ୍ର ନ ଥିଲା ସ୍ମରଣ,
ସତ୍ୟ ଯେ ଯାହାର ସେ ତାହାର ,
ତାହିଁ ସୂର୍ଯ୍ୟ ଭ୍ରମୁଥାନ୍ତି ଗଗନ ମାର୍ଗରେ ,
ପଦ୍ମିନୀ ସୁନ୍ଦରୀ ରହେ ସରୋବର ନୀରେ,
କୁମୁଦ କୁମୁଦ ବନ୍ଧୁ ଥାନ୍ତି କେତେଦୂରେ,
ତଥାପି ଅଚ୍ଛେଦ୍ୟ ତାଙ୍କ ସ୍ନେହର ବନ୍ଧନ,
ଯେତେଦୂରେ ଥିଲେ ଲୌହ ଟାଣିବ ଚୁମ୍ବକ ;
ତାହିଁ ଥିଲା ଏ ବନ୍ଧର
ତାହୁଁ ତାହୁଁ ମିଳାଇଲା ଅଣି ବେଧ ଏଥି ;
କ୍ଷମାକର ଅପରାଧ,
ସେନାଙ୍କର ଅଧୀନ ମିନତି ।

ରତ୍ନ—(ସ୍ୱଗତ) ଅହା କେମନ୍ତେ ମୁଁ ବଖାଣିବ,
ଏବେ ସୁଦ୍ଧା ନ ବୁଝିଲେ,
ଏବେ ସୁଦ୍ଧା ନ ଚହ୍ନିଲେ
ପାପୀୟସୀ ପିଶାଚୀ ମୁଁ ;
ଦେବମୂର୍ତ୍ତି, ଦେବତା ପ୍ରକୃତ,
କୋମଳ ସରଳ ବିମଳ ହୃଦୟ ତାଙ୍କ,
ସୁନିର୍ମଳ ଦେବଗୁଣେ ଗୁଣବନ୍ତ ସେହୁ,
ଅଭାଗୀ ମୁଁ, ରାକ୍ଷସୀ ମୁଁ,
ନରକର କୀଟ ମୁହିଁ,
ମୁ କି ସହ ଏ ପଦ ପ୍ରାନ୍ତକୁ !
(ପ୍ରକାଶ୍ୟେ)ଯୁବା ଶ୍ରେଷ୍ଠ ! ନର ଶ୍ରେଷ୍ଠ !
ଏ ପିଶାଚୀ ଅତି ଅପଦାର୍ଥ,
ପ୍ରିୟତମେ ସମ୍ବୋଧନ ଅକାରଣ ତବ,

ଯେଣୁ ମୁଁ ଅପ୍ରିୟତମ ଅଟଇ ତୁମ୍ଭର,
ପଦରତ୍ନ ମିଳବ ଏକ୍ଷଣି ;
ଜୀବନ ଶୃଙ୍ଖଳ ନାମ—
ନିତାନ୍ତ ଅଯଥା କିନ୍ତୁ ନୁହଇ ଏ ନାମ
ଯେହେତୁ ଜୀବନ ତବ ହସ୍ତରେ ମୋହର,
ହତାଦରଣୀ ମୁହିଁ ଏ ପୁରରେ,
କେ ଆଣିଲା ତୁମ୍ଭଙ୍କୁ ଏ ସ୍ଥଳେ ?
କର୍ଣ୍ଣା! ତୁମ୍ଭେ ଭୁଲିଗଲ କପଟେ ଏହାଙ୍କ ?
କପଟୀ ଛଳନାକାରୀ ସମସ୍ତେ ଏ ପୁରେ,
ଦସ୍ୟପୁରୀ, ଦସ୍ୟୁ ଏ ସକଳେ ।

ସୁଦାମ—ବୁଝିଅଛୁ ଦସ୍ୟୁ ବୋଲି ଆଦ୍ୟରୁ ଏହାଙ୍କୁ
ଚିହ୍ନିଅଛୁ ପ୍ରଥମ ଦର୍ଶନେ ;
କିନ୍ତୁ ଏକାକୀ ମୁଁ, ଗହନ କାନନ,
ତ କରନ୍ତ୍ର, ବନ୍ଧୁଜନ ଥିଲେ ସେ ଏକଙ୍କେ,
ନ ଅସି ମୁ ଅନ୍ୟ ଗତି ନ ଦେଖିଲି ତହୁଁ :
କିନ୍ତୁ ମୁଁ ଜାଣିଲି ମୋର ସୌଭାଗ୍ୟ ଏତେକ
ନ ବଧି ଜୀବନେ ମୋତେ ଆଣିଲେ ଯା ଏଥି,
ବନ୍ଧୁ ହେତୁ ବ୍ୟାକୁଳିଲ ହୋଇ ମୁଁ ଅକୁଳ,
ସେ ଆକାଂକ୍ଷା ହେଲା ମୋର ପୂର୍ଣ୍ଣ ;
ଜାଣିଲି ନିଶ୍ଚୟ ବନ୍ଧୁ ନାହିଁ ମୋ ଜୀବନେ,
ନାହିଁ ବନ୍ଧୁ ଅଛି ଏ ଭୁବନେ,
ଜୀବନେ ମୋ ନାହିଁ ପ୍ରୟୋଜନ ;
ବୁଝିଲି ନିଶ୍ଚୟ ଭାଇ .
ଏହି ତବ ସୁଗଠିତ ସୁବର୍ତ୍ତୁଳ

ସୁନ୍ଦର କମଳ ବର୍ଣ୍ଣେ
ଲଭିଅଛ ସ୍ୱର୍ଗଧାମ,
ଦୟାକର ଦୟାମୟି !
ପଠାଅ ବହନ ମୋତେ ବନ୍ଧୁ ପାଶେ ମୋର ।
(ଉପବେଶନ ଓ କଣ୍ଠ ପ୍ରଦର୍ଶନ)

କୃପାକର, ନ କର ବିଳମ୍ବ,
ଭେଟିବ ମୁଁ ବେଗେ ଯାଇଁ—
ଭାଇ ରେ ସୁବଳ ! ପ୍ରାଣସଖା !
ପଳାଇ ତୁ ଆସିଥିଲୁ ଲୁଚି ଅଗ ହୋଇ,
ପଥ ଧରି ଆସିଅଛୁ ପଛେ ପଛେ ମୁହିଁ,
ଦେଖିଲି ମୁଁ ସେହି ହ୍ରଦ ପଥେ,
ସେହି ହ୍ରଦେ ସେହି ସ୍ୱର୍ଣ୍ଣପଦ୍ମ,
ସେହି ସ୍ୱର୍ଣ୍ଣପଦ୍ମ ଲୋଭେ ବଢ଼ାଇଲି କର,
ଦଂଶିଲା ମୋ କଣ୍ଠେ ଭାଇ ସେହି କାଳସର୍ପ ;
ତୁହିଁ କଣ୍ଠ ହେଲୁ ଦେଖାଦେଖି,
ପରସ୍ପର ଦୁଃଖେ ଦେଖି ହେଲୁଁ ଦୁହେଁ ଦୁଃଖୀ,
ପରସ୍ପର ପ୍ରବୋଧନ ହେଲୁଁ ଦୁହେଁ ସୁଖୀ ।
ଏଣୁ ତୁମ୍ଭେ ନ କର ବିଳମ୍ବ
ଅନ୍ତିମ ପ୍ରାର୍ଥନା ମୋର ନ କର ବିଳମ୍ବ ।

ରତ୍ନ—କ୍ଷମାକର କ୍ଷମାସିନ୍ଧୁ !
ଦେଖି ନାହିଁ କଦାପି ମୁଁ ବନ୍ଧୁଙ୍କୁ ତୁମ୍ଭର ।

ସୁଦା—ଅଛ ତେବେ ସୁବଳ ପଛରେ ?
ରଖିଅଛ କାହିଁ ତାକୁ ?
କହ ମୋତେ ଫିଙ୍ଗାଇ କପଟ ।

ରତ୍ନ—ନ ଜାଣେ ମୁ କହୁ ସେ ବାରତା,
ନ ଜାଣେ ମୁ ଅଛନ୍ତି କି ନାହାନ୍ତି ସେ ପ୍ରାଣେ,
ବଧୂ ନାହିଁ ଜାଣେ ମୁ ଏତେକ ;
ଜାଣେ ନା ମୁ ସୁବଳଙ୍କୁ,
ଚିହ୍ନେ ନା ମୁ ସୁବଳଙ୍କୁ,
ବଧୂ ନାହିଁ ବନ୍ଧୁଙ୍କୁ ଭ୍ରମର,
ଅବଳା ମୁ ନ ଜାଣେ କପଟ ।

ସୁବା—ପ୍ରବଞ୍ଚନା ପ୍ରବଞ୍ଚନା ପୂର୍ଣ୍ଣ ଏ ମଣ୍ଡଳ,
ପ୍ରବଞ୍ଚନା ବାକ୍ୟେ ବାକ୍ୟେ,
ପ୍ରବଞ୍ଚନା ପ୍ରତି ବ୍ୟବହାରେ,
ନେତ୍ରେ ନେତ୍ରେ କପଟ ଦର୍ଶନ,
କହ ମୋତେ କୃପା କରି
ଏ ସମୟେ ନ କର ଛଳନା ।

ରତ୍ନ—କ୍ଷମାକର, କପଟ ମୋ ନାହିଁ ଛଳେ ଏଥି,
ଅର୍ପିଛନ୍ତି ଯେତେ ଯେତେ ଏଥି
ରଖିଅଛି ସମସ୍ତଙ୍କ ଚିତ୍ରପଟ ମୁହିଁ,
ଦେଖାଇବି ସବୁ ଚିତ୍ରପଟ,
ଦେଖିଲେ ବୁଝିବ ସତ୍ୟ—
ବନ୍ଧୁଙ୍କୁ ମୁଁ ବଧୂ ନାହିଁ କଦାପି ଭ୍ରମର ।

ସୁବା—କୃପା କର, ଦୟା କର,
ଦେଖାଅ ବହନ କେବେ ଚିତ୍ରପଟ ମୋତେ ।

ରତ୍ନ—ଦେଖାଇବି, ଶାନ୍ତ ହୁଅ, ନ ହୁଅ ଅଧୀର,
ଶୁଣ ବାରେ ଅଭାଗୀ ମିନତି ।

(ସ୍ୱଗତ) ଅହା କେମନ୍ତେ କହିବ କଥା (କ୍ଷଣକାଳ ନୀରବ)
ନ କହିଲେ କେମନ୍ତେ ବା କେ ବୁଝିବ
ମାନସେ ଅଙ୍କୁର ଆଶା ମାନସେ ଶୁଖିବ,
ମନଛବି ନ ଜାଣିବେ କେହି,
କହିବ ମୁଁ, ଯାହା ହେବ ହେଉ କର୍ମେ ।

(ପ୍ରକାଶ୍ୟେ)ଦେଖିବାବେଳରୁ ଏହି ଶ୍ରୀପଦପଙ୍କଜ
ଅର୍ପିଅଛି ମନ ପ୍ରାଣ ଅଭାଗୀ ଶ୍ରୀପଦେ
ସେବାକର ଅଧୀନାକୁ ପଦଦାସୀ ପଦେ ।

ସୁଦା—ଚମ୍ପକ ଦେଖାଅ କହିନ
ବନ୍ଧୁବର ଥିଲେ ମୋ ପଟ୍ଟଣେ
ପ୍ରତିଜ୍ଞାରୁ ରହିଲି ମୁଁ ଏ ବାକ୍ୟ ସୁମ୍ବର ।

ରହି—ଶାନ୍ତ ହୁଅ, ଧୈର୍ଯ୍ୟଧର,
ଦଶକ୍ରୋଶ ଦୂର ଏଥୁଁ ଚମ୍ପକ ପୁର ;
ଚତୁର୍ଦ୍ଦିଗେ ପ୍ରହରୀ ଜାଗନ୍ତ,
ବୁଲି ବୁଲି ଦଳଯାକ
ହୋଇଅଛ ପଥଶ୍ରାନ୍ତ,
ନିଦ୍ରାଯାଅ କ୍ଷଣେ ଏଥି,
ଉଠାଇବି ଯଥାକାଳେ ;
ଦେଖ ଏଥି ଏ ବୀର ଭୂଷଣ, (ଅଙ୍ଗୁଳି ନିର୍ଦ୍ଦେଶ)
ଉଷ୍ଣୀଷ ଏ ଅଛି ଦେଖ,
ଦୋହେଁ ହେବା ଏ ବେଶେ ଭୂଷିତ,
ନ ପୁଛିବେ କେହି ପଥେ,
ଅସ୍ତ୍ରଶସ୍ତ୍ର ନେବା ଅଶ୍ୱ
ଉଭୟବନ୍ଧୁସଙ୍ଗେ ଗଲେ ମିଳିବା ସେ ସ୍ଥାନେ ;

କ୍ରୋଶାର୍ଦ୍ଧ ବିସ୍ତୃତ ପ୍ରସ୍ଥ ବିଶିଷ୍ଟ ଗଠନ,
ଦେବୀଦୁର୍ଗ ବୋଲି ସର୍ବେ ବୋଲନ୍ତି ସେ ସ୍ଥଳେ,
ବେଶ ଚିହ୍ନି ଦ୍ୱାରପାଳେ ହେବେ ଅନ୍ତର୍ହିତ
ଦେଖାଇବ ବଧୂ ନାହିଁ ଚିନ୍ତନ୍ତୁ ତୁମ୍ଭର ।
ଧୈର୍ଯ୍ୟଧର, ଉଠ ପର୍ଯ୍ୟଙ୍କରେ

(ସୁଦାମଙ୍କର ପର୍ଯ୍ୟଙ୍କେ ଉପବେଶନ)

ସୁଦା—ଅଚ୍ଛା ତେବେ ପାଳନୀୟ ଯୁକ୍ତି ତବ

(ଉଭୟଙ୍କର ଭିନ୍ନ ଭିନ୍ନ ପର୍ଯ୍ୟଙ୍କେ ଶୟନ)

(ସ୍ୱଗତ) ପିଶାଚୀ ଏ, ମାୟାବୀ ରାକ୍ଷସୀ,
କି ପ୍ରତ୍ୟୟ କରନେ ଏହାର,
ନିଦ୍ରାଯାଉ, ପଳାଇବି ଏକାକୀ ମୁଁ ।

(ପୁନଃ ପୁନଃ ରତ୍ନମାଳୀର ମୁଖାବଲୋକନ କ୍ଷଣକାଳ
ପରେ ଉତ୍ଥାନ ଓ ରତ୍ନମାଳୀ ନିଦ୍ରା ଯାଇଥିବାର
ପୁନଃ ପୁନଃ ହସ୍ତ ଓ ମୁଖ ଭଙ୍ଗିରେ ପ୍ରକାଶ)

(ପ୍ରକାଶ୍ୟେ)ଶୋଇଲଣି ଶୋଇଲଣି
କହୁଅଛୁ ପଥ ମୋତେ
ପିନ୍ଧେ ସେହି ବେଶ ଭୂଷା (ପୁନଃ ପୁନଃ ରତ୍ନମାଳୀର ମୁଖା-
ବଲୋକନ ଓ ଉଷ୍ଣିଶାଦ ଗ୍ରହଣ)
ଦେଖେ ଯାଇଁ ବେଗେ ତହିଁ
ସୁବଳର ଚିତ୍ରପଟ ଅଛି କି ନ ଅଛି

(ପ୍ରସ୍ଥାନୋଦ୍ୟମ, ରତ୍ନମାଳୀର ସହସା
ଉତ୍ଥାନ ଓ ସୁଦାମଙ୍କର କର ଧାରଣ)

ରତ୍ନ—ରହେ ସାଧୁ ସତ୍ୟନିଷ୍ଠ !
ପଳାଉଛ କାହିଁ ଏ ନିଶାରେ ?

କେଉଁ ବ୍ୟବହାର ଏ ତୁମ୍ଭର !
କେ କପଟୀ ? କେ ଜାଣେ ଛଳନା ?
କିଏ ଏଣୁ ବିଶ୍ୱାସଘାତକ !
ବିଶ୍ୱାସରେ କହିଥିଲି ସକଳ ବୃତ୍ତାନ୍ତ,
ବିଶ୍ୱାସେ ମୁଁ ନ ବଧିଣ ରଖିଲି ସବୁଣ—
ଏହୁପରି ସାଧୁ ବ୍ୟବହାର ତବ ?
ଏହୁପରି ସଜ୍ଜନ ମର୍ଯ୍ୟାଦା ?
ସାଧିଣ କଳାଗ ମନ
ଦେଖାଇବ କୃତଜ୍ଞତା ପରିଚୟ ?
ବଧାଇବ ପିତା, ମାତା, ଭ୍ରାତାଆଦି
ସବଂଶେ ଅମ୍ଭଙ୍କୁ,
ଲଭାଇବ ମୋତେ ସେହି ବଳାଶର ହେତୁ ?
ଲୁଙ୍ଗାଗଲା ସାଧୁପଣ,
ଜଣାଗଲା ସତ୍ୟନିଷ୍ଠା ତବ,
ଅବହୃତ ତୁମ୍ଭ ସହ ସାଧୁ ବ୍ୟବହାର ।

ସୁଦା—ବଧ ମୋତେ, ନାହିଁ ମୋ ମମତା ପ୍ରାଣେ,
ଦେଖେ ମୁଁ କହନ ଯାଇ ଖିଲ ସୁବଳକୁ ।

(ବକ୍ଷ ପ୍ରଦର୍ଶନ)

ଋଷି—ନୁହ ତୁମ୍ଭେ ସାଧୁ କହାଉଛେ,
ପ୍ରବଞ୍ଚନା ସକଳ ତୁମ୍ଭର,
ପ୍ରବଞ୍ଚକଠାରେ ଦୟା ନୁହଇ ବହିତ,
କ୍ଷଣେ କର ସତ୍ୟ ତୁମ୍ଭେ କ୍ଷଣେ ସତ୍ୟ ଭଙ୍ଗ ;
କି ସାହସେ କହ ମୋତେ ପଶି ଦସ୍ୟୁପୁରେ
ଦସ୍ୟୁପଣ ସାଧିବାକୁ ବଳାଇଲ ଅଶା ?

ଯେନ ଏ ଉଷ୍ଣିଷ, ଏ ବେଶ, ଏ ଭୂଷା—
ଚଳ ଦୁଃସାହସୀ ତୁମ୍ଭେ,
ନ ଛାଡ଼ିବ କଦାଚିତ୍ତେ
ପିତୃ ଆଜ୍ଞା ପାଳିବା ନିମିତ୍ତ ।
(ଅର୍ଦ୍ଧ ମୂର୍ଚ୍ଛା ଅବସ୍ଥାରେ ସୁଦାମଙ୍କ ବକ୍ଷୋପରି ପତନ)

ସୁଦା—ଆହା ! ଏ କି ହେଲା !
ଉଠ ଦେବ, ଧର ଦମ୍ଭ,
ପଠାଅ ବହନ ମୋତେ ବନ୍ଧୁ ପାଟଣ ମୋର ।

ରତ୍ନ—ପ୍ରାଣନାଥ ! ପ୍ରାଣନାଥ ତୁମ୍ଭେ ଏ ଦାସୀର,
ଯେଣୁ ପଛେ ନ କରିବ ;
ହେବ ବନବାସିନୀ ମୁ,
ତରୁତଳେ ପଦ ଚିହ୍ନ କରଣ ଅଙ୍କିତ
ବନ ପୁଷ୍ପେ ପୂଜିବି ନିମିତ୍ତ (ଉତ୍ଥାନ)
ବନଫୁଲ ବନମୂଳ ଦେବି ନୈବେଦ୍ୟ,
ସେହି ପଦେ ଧ୍ୟାନ କରି କାଟିବି ଜୀବନ,
ନାହିଁ ଆଉ ଅବସର (ପୋଷାକ ପରିଧାନ)
ଏ ସୁଯୋଗ ହରାଇଲେ ଘଟିବ ବିପଦ,
ଚଳ ବେଗେ କରିବା ପ୍ରସ୍ଥାନ ।
(ଉଭୟଙ୍କର ପ୍ରସ୍ଥାନ)



# ଦ୍ୱିତୀୟ ଅଭିନୟ ।

## ପ୍ରଥମ ଦୃଶ୍ୟ—ଦେବୀଦୁର୍ଗର ବହିର୍ଦ୍ଦେଶ ।

( ଅସି ହସ୍ତେ ପ୍ରହରୀମାନଙ୍କର ଭ୍ରମଣ, ରତ୍ନମାଳୀ ଓ ସୁଦାମଙ୍କର
ପ୍ରବେଶ ପ୍ରହରୀମାନଙ୍କର ଅଭିବାଦନ )

ରତ୍ନ—ଏହି ସେହି ଦେବୀଦୁର୍ଗ,
ଏହି ମୋର ଚିତ୍ରପଟଗୃହ,
ଯେତେ ଯେନ୍ତୁ ପଡ଼ିଛନ୍ତି ନୟନେ ମୋହର
ରଖିଅଛି ସମସ୍ତଙ୍କ ପ୍ରତିମୂର୍ତ୍ତି ଏଥି ।

(ଦ୍ୱାରମୋଚନ; ଦୃଶ୍ୟ—ଚିତ୍ରାଗାର ମଧ୍ୟସ୍ଥଳ; ଚିତ୍ରବାସୀ-
ମାନଙ୍କର ଉତ୍ଥାନ ଓ ଅଭିବାଦନ)

ଗୋଟି ଗୋଟି ଦେଖ ପ୍ରତିମୂର୍ତ୍ତି,
ଦେଖ, ଦେଖ, କେଉଁ ମୂରତି ଏଥି
ପ୍ରିୟ ବନ୍ଧୁଙ୍କର ଛବି ।

ସୁଦା—(ସଚକିତେ)
ପ୍ରତିମୂର୍ତ୍ତି ! ଚିତ୍ରପଟ !
ଏ ଯେ ଜୀବନ୍ତ ପ୍ରତିମା ସର୍ବେ ?
କହ ସଖେ ଏ ରହସ୍ୟ ମୋତେ ?
ଦେବୀ କି ମାନବୀ ତୁମ୍ଭେ ?
ମାୟାବୀ କି ଯାଦୁକର ?
କ୍ଷୁଦ୍ର ବୁଦ୍ଧି ମାନବ ମୁଁ,
ମୋ ବୁଦ୍ଧେ ଅଗମ୍ୟ ଏହା ।
ପ୍ରତିମୂର୍ତ୍ତି ! ପ୍ରତିମୂର୍ତ୍ତି ! ଚିତ୍ରପଟ !

ଏ କହୁଛ ପ୍ରତିମୂର୍ତ୍ତି ଶବପଟ ବୋଲି ?
ହସୁଛନ୍ତି, ବସୁଛନ୍ତି, ବୁଲୁଛନ୍ତି,
କହୁଛନ୍ତି କଥାବାର୍ତ୍ତା,
ଦେଖୁଅଛୁ ଜୀବନ୍ତ ପ୍ରତିମା ସର୍ବେ,
କହ ମୋତେ ଫେଡ଼ି ଆଗେ
କହ ମୋତେ ଫିଟାଇ ସଂଶୟ,
ବଧି ପୁଣ ବଞ୍ଚାଇଲ
କେଉଁ ପରକାରେ ଏ ସବୁଙ୍କୁ ?

ରତ୍ନ—ପିଶାଚୀ ରାକ୍ଷସୀ ମୁହିଁ,
ମାନବୀ ମୁଁ, ଅତି ହୀନା ମାନବୀ ଶ୍ରେଣୀରେ,
ଲୋଡ଼େ ଦେବୀ, ନଜାଣେ ମୁଁ ମାୟା ତନ୍ତ୍ର,
ନଜାଣେ ମୁଁ ଜୀବନ୍ୟାସ ମନ୍ତ୍ର ;
କିନ୍ତୁ ମୁଁ ଜାଣନ୍ତେ କେବେଁ
ହଇ ନାହିଁ ନରହିଂସା ;
ଅଛି ମୋର ବ୍ରତ ଏକ,
ସେ ବ୍ରତ ପାଳନ କାରୁ
ମନୁଷ୍ୟ ମାଂସ ନ କରେ ଭୋଜନ,
ଜୀବହିଂସା ନାହିଁ ସେ ଧର୍ମରେ ;
ପିତାଙ୍କର ଅର୍ଥେ ଦୁଷ୍ଟୋଜନ,
ତାଙ୍କ ଆଜ୍ଞା ଅନୁକ୍ରମେ,
ଯାହାଙ୍କୁ ସେ ପେଶନ୍ତି ମୋ ସ୍ଥଳେ,
ହରେଁ ତାଙ୍କ ଅର୍ଥଯାକ, ନ ହରେଁ ଜୀବନ ;
କିନ୍ତୁ, ମୃତ ଦେହରୂପେ ଏଏ ମୁଁ ସଜାଇ,
ଥୁଅଇ ଏ ସର୍ବେ ମୋହ ଅନୁଗତ

ମୃତ ଦେହ ବୋଲି ତାଙ୍କୁ ଅଣନ୍ତି ଏ ସ୍ଥଳେ
ପିତା ମାତା ଭ୍ରାତା ଆଦ
କେହ ନ ଜାଣନ୍ତି ଏହ ଦେବୀଦୁର୍ଗ କଥା ;
ହୃତ ଅର୍ଥୁ ଉତ୍ତମାଂଶ ରଖି ନିଜ ହସ୍ତେ
ପଠାଏଁ ମୁଁ ଏ ଗୃହ ବାହ୍ୟକୁ,
ଅବଶିଷ୍ଟ ସବୁ ପିତାଙ୍କର ।

ସ୍ୱଦା—(କରପୁଟେ)
ପୁଣ୍ୟବତୀ ଦେବୀ ତୁମ୍ଭେ,
ସ୍ୱର୍ଗୀୟ ମୂରତି ତବ ସ୍ୱର୍ଗୀୟ ପ୍ରକୃତି,
ନୁହ ତୁମ୍ଭେ କଦାପି ମାନବୀ,
ଦେବୀ, ଭଗବତୀ, ସ୍ୱୟଂ ଜଗଦ୍ଧାତ୍ରୀ,
ଜଗତରେ ଏ ଦୁଷ୍କର୍ମ କରଣ ଦର୍ଶନ
ଅବତୀର୍ଣ୍ଣା ହୋଇଅଛ ମାନବୀ ରୂପରେ
ଅଗତିଙ୍କୁ ତାରିବାକୁ ଅଗତିତାରିଣୀ ;
କ୍ଷମାକର, ଅଜ୍ଞାନ ମୁଁ, ଅତି ଅଭାଜନ,
ହୀନବୁଦ୍ଧି, ପାପିଷ୍ଠ, ପାମର
ଅଜ୍ଞାନେ ମୁଁ କଲି ମହାପାପ,
ଘୋର ଅପରାଧୀ ମୁହିଁ ତବ ଶ୍ରୀଚରଣେ,
କୃତଘ୍ନ ମୁଁ ବିଶ୍ୱାସଘାତକ,
ପ୍ରବଞ୍ଚକ, ଭୀରୁ, କାପୁରୁଷ,
କ୍ଷମାକର କ୍ଷମା ଗୁଣେ ଏ ହୀନ ଅଧମେ ।

ରତ୍ନ—ଛି ଛି ନାଥ କ୍ଷମାକର,
ପଦ ଦାସୀ ତୁମ ଏ ଅଧୀନା;
ଦାସୀ ପାଶେ ଏ ସକଳ ନ ଦଶେ ସୁନ୍ଦର ।

ସୁଦା—ଅବବେକ୍ଷି, ବନ୍ଧୁ ଅବଲେଙ୍କ ମୁହଁ ।

ଭଦ୍ର—କ୍ଷମାକର ! ଅକାରଣେ ନ ହେବ ଲଜ୍ଜିତ,
ଡିମ୍ବାଳକୁ ଅଟେ ଯଥା ଯୋଗ୍ୟ ;
ଶଠ ସଙ୍ଗେ ଶଠ୍ୟ ବୁଦ୍ଧି ଶାସ୍ତ୍ରରେ ବିହିତ ;
ସେ କାଳରେ ଜାଣିଥିଲେ
ବସ୍ତ୍ରପୁରର ବସୁ କନ୍ୟା ସହାରଣୀ ମୋତେ,
ସହାରଣୀ ପକ୍ଷେ ଯାହା ଯୋଗ୍ୟ ବ୍ୟବହାର
ହୋଇଅଛୁ ତାହା ସେ କାଳରେ ;
ଏବେ ଜାଣ ମୁଁ ପଦଦାସୀ,
ପଦଦାସୀ ପକ୍ଷ ଯାହା ବହିଛି ବିଧାନ
କର ତାହା ବନ୍ଧୁ ବନ୍ଧୁ ।
ସେନାକର ଶ୍ରୀପଦ ପଙ୍କଜେ ।
ଦେଖ, ଏଥି ଅନ୍ତମ୍ଭକ ବନ୍ଧୁ ବର ତବେ ।

ସୁଦା—ବନ୍ଧୁ ମୋର ! ଭଲ ସ୍ମରିଲରେ !
( ଦୂର ଦୂର ଦର୍ଶନ )
କାହିଁ ବନ୍ଧୁ ? ନାହିଁଟି ଏ ପୁରେ,
କାହିଁଗଲୁ ଭାଇ ମୋର, ?
ବୃଲ୍ଲଭ ଖୋଜି ଖୋଜି ହେବେ ସେ ଥକୁଟେଲେ,
ତା ଉଦ୍ଦେଶେ ଯିବ ମୁଁ ବଞ୍ଚନ ।

ଭଦ୍ର—ଧୈର୍ଯ୍ୟଧର, ହୁଅ ଶାନ୍ତ,
ଏ ଅଧୀନା ଯିବ ସଙ୍ଗେ ସଙ୍ଗେ,
ବୁଲି ବୁଲି ହେବେ ପରିଶ୍ରାନ୍ତ !
ସେବକ-ଚରଣ ଦାସୀ ।

୪ ( କାରାବାସୀମାନଙ୍କ ପ୍ରତି ଚାହୁଁଛନ୍ତି )

## ଦ୍ୱିତୀୟ ଦୃଶ୍ୟ—ଗୋବର୍ଦ୍ଧନଙ୍କ ଗୃହର ଏକାଂଶ

(ଗୋବର୍ଦ୍ଧନ, ସ୍ତ୍ରୀଲୋକେ ଓ ପୁତ୍ରମାନଙ୍କର ପ୍ରବେଶ)

ଗୋବ—ବାବା ମୋର ! ମା ମୋର !
ଇନ୍ଦୁମାଲ ! ଇନ୍ଦୁମାଲ !
ହୃଦନିଧି ! କଣ୍ଠମାଲୀ !
କାହିଁଗଲୁ ମୋ ହୃଦୟଝାଲ !
ବାବା ମୋର ! ଧନ ମୋର ! କହ ମୋତେ !
କେଏ ଦେବ ଅଣି ମୋର ନୟନପିତୁଳୀ !
ରତ୍ନ ମୋର ! ମୋ ଅଙ୍କନନ୍ଦନ !
କାହିଁଗଲୁ ଅନ୍ଧାର ଏ ବୃଦ୍ଧ ବୟସେ !
ହେଁ ହେଁ ହେଁ ହେଁ (ରୋଦନ)

ସ୍ତ୍ରୀ—ଇନ୍ଦୁମାଲ ! ଲକ୍ଷ୍ମୀ ପୁଞ୍ଜାଳି ମୋର
ହେଁ ହେଁ ହେଁ ହେଁ (ରୋଦନ)
କାହିଁ ଗଲୁ ନୟନପିତୁଳୀ ମୋର !
କେମନ୍ତେ ବଞ୍ଚିବ ଧନ ହେଁ ହେଁ ହେଁ ହେଁ
ନ ଦେଖି ତୋ ମୁଖ ଶଶୀ ହେଁ ହେଁ ହେଁ ହେଁ (ରୋଦନ)

ଗୋବ—ନ ଶୁଣିଲୁ ବୁଢ଼ା ପିତା ମାତାଙ୍କୁ ତୁ ଥରେ !
ବାଲ୍ୟକାଳୁଁ କେତେ ଯତ୍ନ କରି ମୁଁ ନ ଥିଲି !
କେତେ ଆଶା ଥିଲା ମନେ,
କେତେ ଦମ୍ଭ ଧରିଥିଲି ଏକା ତୋହ ଲାଗି,
ସବୁ ଆଶା କଲୁ ମୋ ବିଫଳ ;
ଚୂର୍ଣ୍ଣ କରି ଦେଲୁ ଦମ୍ଭ ମୋର ;
ତୋର ଯୋଗୁଁ ପୁତ୍ରଙ୍କୁ ମୁ ନରଗଣେ ମାନସେ,

ଓଃ ! ତୀକ୍ଷ୍ଣ ଶୂଳ ତାଙ୍କ ଅଙ୍ଗରେ ଭୋଜିଲ,
କାହିଁ ଗଲ ? କାହିଁ ଗଲ ? ହେଁ ହେଁ ହେଁ ହେଁ (ରୋଦନ)

୧ମ ପୁତ୍ର—ପିତା ! ଧୈର୍ଯ୍ୟଧର, ଧୈର୍ଯ୍ୟଧର,
କି ହେବ କାନ୍ଦିଲେ ବୃଥା ?
ଦୂତଗଣ ଗଲେ ଚତୁର୍ଦ୍ଦିଗେ
ଅବଶ୍ୟ ପଡ଼ିବ ଧରା ଶତ୍ରୁ ଅବିଳମ୍ବେ,
କେତେଦୂର ଯିବ ସେ ବନକେ,
ପାପିଷ୍ଠ ପାମର ଦୁଷ୍ଟ ବିଶ୍ୱାସଘାତକ ।

ହିରୋକ—( ସକ୍ରୋଧେ )
ପାପିଷ୍ଠ ମେ ଧର ତାକୁ,
ଦଣ୍ଡ ଅଣି ଧର ଦୁର୍ବ୍ବୃତ୍ତକୁ,
କବାଟର ଜଳକରେ ହୃଦ ମୁଁ ତାହାର
ତା ଶୋଷିବ ପେଟର ଜଳକ
ତେବେ ମନ ହେବ ଯେବେ ଶାନ୍ତ ।
ଅନାର୍ଯ୍ୟ ଅଧର୍ମୀ ଛାର !
ଯେତ ହସ୍ତେ ପଡ଼ି ସେ ଶୃଗାଲ,
ହିଂସ୍ରୀ ତୋତ୍ର ସିଂହ ଶିଶୁ କଲା ସେ ହରଣ !
କେଉଁ ମୋତେ ଧର ତାକୁ
ଯାଅ ତୁମ୍ଭେ ନଚେ ସର୍ବ୍ବେ ନରକ ବଳମ୍ବ ।

୧ମ ପୁତ୍ର—ସମସ୍ତେ ପ୍ରସ୍ତୁତ ପିତା,
କିନ୍ତୁ, ଦେଖ ଏ ଅବସ୍ଥା,
କ୍ଷଣେ କ୍ଷଣେ ହେଉଛନ୍ତି ଅସ୍ଥିର, ଅଧୈର୍ଯ୍ୟ;
ଛାଡ଼ିଯିବୁ କି ପ୍ରକାରେ ?
ଶାନ୍ତ ହୋଇ ସ୍ଥିରହୋଇ ରହନ୍ତୁ ସ୍ୱସ୍ଥରେ,
ଖୋଜନ୍ତୁ ଦୂତଲେ ଯାଇ କାହିଁଗଲା ଦୁଷ୍ଟ ।

ଗୋବ—ନାହିଁ ଚନ୍ଦ୍ରା, ଜାଣୁଛି ମୁଁ ତୁମ୍ଭର ଚର୍ଚ୍ଚରେ,
ଯାଅ ସର୍ବେ ନ କର ବିଳମ୍ବ ।

( ପ୍ରହରୀମାନଙ୍କର ପ୍ରବେଶ ଓ ଅଭିବାଦନ । )

କେମନ୍ତେରେ ଜଗିଥିଲ ଦ୍ୱାରେ ଦ୍ୱାରପାଳ !
କେଉଁପଥେ ଗଲା ଚୋର କେହୁ ନ ଦେଖିଲ ?

୧ମ ପ୍ରହରୀ—ହଜୁର ! ହଜୁର ! ମୋ ଦୁଆରେ
ଥିଲା ବନ୍ଦା ହୁସିଆର ।
ସେ ଦୁଆରେ ଯାଇ ନାହିଁ ଚୋର ।

୨ୟ ପ୍ର—ଆଜ୍ଞା ଜାଣ ମୋ ଦୁଆରେ
ରାତି ଅଧ ହେବ ବେଳେବେଳେ—
ଦେଖା ଗଲା ଗୋଟା ଜୀବ—
ଲମ୍ବଗୋଡ଼, ଶୁଣ୍ଢଦେହ, ଲାଙ୍ଗୁଳଟା ନାହିଁ,
ବେକଠାରୁ ମନୁଷ୍ୟଟା ଉପରକୁ ଯେଣୁ,
ଶୁକ୍ଳକେଶ, ଦୁଇମୁଣ୍ଡ, ଅଣ୍ଡି ଦେହଯାକ,
ଉଠାଇଲି ପୃଷ୍ଠେ ଏବେ କରି ମୁଁ ତାହାକୁ,
ସେଁ—କରି ଛୁଟିଲା ସେ ତୁଫାନ ବଣେ ବଣେ ।
ଚୋରଯୋର ଦେଖା ନାହିଁ କହୁ ସେ ଦୁଆରେ ।

୩ୟ ପ୍ର—ନାହିଁ ଆଜ୍ଞା, ଦୁଆରେ ସେ ଯାଇ ନାହିଁ,
ଥିବ କାହିଁ ଦେବ ଲୁଚି,
ନ ହେଲେ ସେ ଧୂର୍ତ୍ତେ ଧୂର୍ତ୍ତେ
ଲୁଚି ଯାଇଥିବ ପରେ ପରେ

୪ର୍ଥ ପ୍ର—ଆଜ୍ଞା ଜାଣ ମୋ ଦୁଆରେ
ଶୁଣ ଏ କି ଅଦ୍ଭୁତ ଘଟଣା

ଭାଙ୍ଗି ଗଲ, ପୁର ମଧ୍ୟେ ଦେଖିଲି ଅଲୋକ,
ଅଲୋକ ସେ ! ବାପରେ ବାପ୍
ଜ୍ୟୋତିକାର ! କି ପ୍ରକାଣ୍ଡ ! (ହସ୍ତ ଇଙ୍ଗିତ)
କି ଉଜ୍ଜ୍ୱଳ ! କି ତେଜ ! କହିଁ ଗଣେ !
ଅକ୍ଷି ବୁଜି ଗଲା ମୋର,
ଢାଲ ତରବାରି ଖସି ପଡ଼ିଗଲା ହାତେ,
ଅଚେତନ ହୋଇ ମୁଁ ଆପଣେ,
କଷ୍ଟରେ ଫେରିଲା ଜ୍ଞାନ,
ଚାହିଲି ଏଣେ ମୁହିଁ
ଅଲୋକ ମଧ୍ୟରେ ଏକ ଅଦ୍ଭୁତ ପୁଷ୍ପ ରଥ,
ରଥ ମଧ୍ୟେ ବସିଛନ୍ତି ଦୁଇ ଦେବ ଦେବୀ,
ଦେବୀଟି ସେ ଦେଖିବାକୁ
ଅବିକଳ ରାଣୀ ମାଙ୍କପରି ;
ପୁଣି ରଥେ ଲୋକ ଅଗଣନ,
କେତେକରେ ପୁଷ୍ପବୃଷ୍ଟି କେ ବଜାଏ ଶଙ୍ଖ,
କେହୁ ରୂପ କେହୁ ବେଶ କାହାରେ ସୁନ୍ଦର,
ଶୂନ୍ୟେ ଶୂନ୍ୟେ ଉଡ଼ିଲା ସେ ରଥ ଉପରକୁ,
କ୍ଷଣପରେ ବସିଲା ଚେତନା,
ଅନାଇଲି ଚାହିଁ ଛତ୍ର ନାହିଁ,
ଦେଖିଥିଲେ ବୁଝିଥାନ୍ତେ କିସ ଏ ସକଳ ।

୧ମ ପ୍ରହରୀ—ଆଜ୍ଞା ସବୁ ଦେବଙ୍କ ତ
ଦେବତାଏ ସ୍ୱର୍ଗୁ ଆସି
ଦୂତଙ୍କର ସେନଗଣେ ରାଣୀମାଙ୍କୁ ନେଲେ,
ଦ୍ୱାରକୁ ସେ ବନ୍ଧା ଯାଉନ୍ତି,
ଦ୍ୱାରେ ସର୍ବେ ପ୍ରହରୀଏ ଥିଲୁ ସାବଧାନ ।

୧ମ ପୁର—ବୀରକୁଳ ବାଗ୍‌ଜଗଣ,
ଶୁଣାଗଲ୍ଲ ସମସ୍ତ କଥାରୁ;
ଛଦ୍ମ ଯାଇଥିଲ ଦ୍ୱାରେ
ଦେଖିଅଛ ସ୍ୱପନେ ଏ ସବୁ
(ଦୁଇଜଣ ଦୂତଙ୍କର ପ୍ରବେଶ ଓ ଅଭିବାଦନ.)
କି ବାରତା, ଦେଖିଅଛ କାହିଁ କହ ?
୧ମ ଦୂତ—ଦେଖିଲି ମୁଁ କୋଶ ପାଞ୍ଚ କ୍ରୋଶ ଦୂର,
ବସ୍ତୁଲୋକ ଅଛନ୍ତି ସେ ବନେ,
ହାତୀ ଘୋଡ଼ା ଦଳ ବଳ ଅସଂଖ୍ୟ ଅସଂଖ୍ୟ,
ପଞ୍ଚ ବର୍ଣ୍ଣଅର ଧର
ଦୂର୍ନ୍ତିଛନ୍ତି ଶୂନ୍ୟପାଶେ ପାଗ ପତାକାଏ,
ନିକଟେ ମୁଁ ନ ପାରିଲି ପଶି,
କି ଅଛ ମହିରେ ତାଙ୍କ ନ ପାରିଲି ଦେଖି,
ତାଙ୍କର ମଧ୍ୟରେ କାଲେ ହୋଇଥିବେ କେହ
ଅଟିଲି ମୁଁ କହିବାକୁ,
ଯାଇଥିଲି ଛଦ୍ମରେ ମୁଁ
ଏତମାତ୍ର ଦେଖିଲି ସେ ଠିଁଗେ ।
୨ୟ ଦୂତ—ମୁଁ ଅଟିଲି ପଶ୍ଚିମରୁ,
ଏକ ଅନ୍ତ ନିକଟରେ
ଦେଖିଲି ମୁଁ ପାଞ୍ଚଜଣ ଅଶ୍ୱାରୋହୀ,
ଗୋଟି ଗୋଟି ଭୀଷଣ ମୂରତି,
ମୃଗ ବାଘ୍ରି ହସ୍ତି କି ବଳଦ
ମାରୁଛନ୍ତି ଗୋଡ଼ାଇ ଗୋଡ଼ାଇ
ପଛେ ପଛେ କେ ବନ୍ଧୁଦୂର,

ନେତ୍ରେ ନେତ୍ର ପରସ୍ପର ନ ମିଳନ୍ତି ତାଙ୍କ,
ବାଷ୍ପ ରୁଦ୍ଧ କଣ୍ଠ ତଳେ ଆସିଲି ପଳାଇ ।

୧ମ ପୁତ୍ର—ପିତା ! ତୁମ୍ଭେ ତୁଅ ଶାନ୍ତ
ଜନନ ! ନ ତୁଅ ଅଧୀର ତୁମ୍ଭେ,
କର ଯତ୍ନେ ପିତାଙ୍କ ଶୁଶ୍ରୁଷା
ଅମ୍ଭେ ସର୍ବେ ଦେଖୁଁ ଅଛେ

(ମାତାଙ୍କର ପୁତ୍ରମାନଙ୍କର ଓଷ୍ଠ ଧାରଣ)

ପ୍ରଭୁବର—ବାପା ! ଧନ ! କହ ମୋତେ !
ପଛେ ଅଉ ପାଇବ ମୁଁ ମୋ କଣ୍ଠ ରତନ
(ବେଦନ) ହେଁ ହେଁ ରତ୍ନମାଳି ହୃଦନାଥ ମୋର

(ସମସ୍ତଙ୍କର ପ୍ରସ୍ଥାନ, ଜଣେ ଦାସୀର ପ୍ରବେଶ,
ଅଧୋବଦନେ ଉପବେଶନ ଓ ରୋଦନ)

ଦାସୀ—(ରୋଦନ)
ହେଁ ହେଁ ମୋତେ ଅଉ କିଏ ଖୁଣ୍ଡିବ ଲୋ ହେଁ ହେଁ
ହେଁ ହେଁ ଚମ୍ପଦ ଜଏ ଦଣ୍ଡିବ ଲୋ ହେଁ ହେଁ
ହେଁ ହେଁ ଆଶା ମୋର ସବୁ ସରିଲା ଲୋ ହେଁ ହେଁ
ହେଁ ହେଁ ସେ ବଚନ କାହୁଁ ଶୁଣିବ ଲୋ ହେଁ ହେଁ

(ନାନା ମୁଖ ଭଙ୍ଗିରେ) ଅଉ ଏଠି ମୁଁ କାହିଁକି ରହିବି ଯେ, ପ୍ର—
ଛୁଟିବ (ପ୍ରସ୍ଥାନ)

(ପୁତ୍ର ବଧୂମାନଙ୍କର ପ୍ରବେଶ)

ଗୀତ

ସାଗର ତରଙ୍ଗ ବାଲି ବକ୍ଷେ ବହନ
ଜ୍ୱଳନ୍ତ ଅନଳ ରେଖାଙ୍କଲେ ଗୋପନ

ରତ୍ନଲକ୍ଷ କେତେ ଧନ
ଲୁଚଲକ୍ଷ କେତେକ୍ଷଣ
ତୁମ୍ଭ ଗୌରବ ଦରଶନେ ମିଳନ ?
ଏତେକାଳ ହେଲେ ସଙ୍ଗ
କେତେ କେତେ କଲେ ରଙ୍ଗ
ଯେମନ ସମସ୍ତେ ନ ଶୁଣିଲୁ ବଚନ
ମାନସେ ସଙ୍ଗିନ ଦେଇଗଲେ ବେଦନ
ତୁମ୍ଭଙ୍କୁ ହରଷ କରୁଅଛୁଁ ଶ୍ୱେଦନ।

---

## ତୃତୀୟ ଦୃଶ୍ୟ—କାନନ ମଧ୍ୟସ୍ଥ ନଦୀତୀର।

(ରତ୍ନମାଳୀ ଓ ସୁଦାମ ଦଣ୍ଡାୟମାନ।)

ସୁଦା—ପ୍ରିୟତମେ ! ଜୀବନସଙ୍ଗିନ !
ଏତେ ଦେଶ, ଏତେ ଗ୍ରାମ, ଏତେ ଏତେ ସ୍ଥାନ
ଭ୍ରମିଲେଣି ଖୋଜି ଖୋଜି,
କାହିଁ କେହି ନ ଦେଲେ ମୋ ବନ୍ଧୁ ସନ୍ଧାନ ;
ଓ ଜନବା ଏବେ ପ୍ରାଣାଧିକେ !
ନ ମିଳିଲେ ସୁବଳ ମୁଁ
ନ ଫେରିବ ଗୃହେ କଦାଚନେ।

ରତ୍ନ—ଧୈର୍ଯ୍ୟଧର ନ ହୁଅ ଅସ୍ଥିର,
କେତେସ୍ଥାନ ଅଛି ଦେଖିବେ ବାକି
ବନ୍ଧୁପ୍ରତି ବନ୍ଧୁଙ୍କ କର୍ତ୍ତବ୍ୟ ଯାହା
ସାଧିବା ଯତନେ ତାହା,
ଧନପ୍ରାଣ ଦେବା ଅକାତରେ,
ଦେଖେ ଯାହାଥିବ ଭାଗ୍ୟେ ଅବଶ୍ୟ ଘଟିବ।

ସ୍ୱବା—ବନ୍ଧୁ ହେଲୁ ଦେବ ମୁଁ ପଶୁଣ
ପ୍ରଥମରୁ ସଙ୍କଳ୍ପ ମୋହର ;
ତନ୍ତ୍ର, ଅହା ଲଳନାଙ୍କି ! କୋମଳ ଚରଣେ !
ତୁମ୍ଭେ ବୃଥା ଲଭିଲ ଯନ୍ତ୍ରଣା ;
ନ ଶୁଣ ନ ଚିନ୍ତ ଆଗେ
ଏ ଅଧମ ସଙ୍ଗେ ହେଲ ସଙ୍ଗୀ,
ନ ବୁଝି ଭୋଗିଲ ଅଛି ଏ ଘୋର ସଙ୍କଟ ।

ରତ୍ନ—ପ୍ରାଣନାଥ
ଅକାରଣ ମୋହଲାଗି ଏ ଚିନ୍ତା ତୁମ୍ଭର ।
ଚରଣସ୍ଥଳେ ଅଛି ଦାସୀ,
ସ୍ୱର୍ଗସୁଖ ନୋହେ ତୁଳ ଏ ସୁଖରୁ ମୋର !

ସ୍ୱଦା—(ଓଷ୍ଠ ଧାରଣ)
ଆହା ! ପ୍ରାଣେଶ୍ୱର !
ଅବାଲ୍ୟରୁ ସମ୍ପଦେ ପାଳିତା ତୁମ୍ଭେ ।
ବନବାସେ ଏ ଭୋଜନ,
ବନପଥେ ଭ୍ରମଣ ଯନ୍ତ୍ରଣା,
ଶୁଣିଥ ନ ଥିଲ ଦିନେ ସ୍ୱପନେ କେମନ୍ତ ।

ରତ୍ନ—ଛି ଛି ନାଥ ଛାଡ଼ ଏ ପ୍ରସଙ୍ଗ ;
ସମ୍ପଦ ସମସ୍ତ ମୋର
ଏ ଜନମେ ଏହି ଅଦ୍ୟ,
ସଚ୍ଛନ୍ଦନେ ପୂରିଲା ମୋ ବ୍ରତ,
ବ୍ରତଫଳେ ଲଭିଅଛି,
ଶ୍ରୀପଦ ପଙ୍କଜ ସେବା,
ଏହି ପଦ ସେବା ମୋର ଅମୂଲ୍ୟ ସମ୍ପଦ ।

ସୁଦା—ଦିବା ଯଦି ହେଲା ଅବସାନ,
ଅସ୍ତାଚଳ ଶୃଙ୍ଗେ ବସି ଦେବ ଅଂଶୁମାଳୀ
ଫେରି ଫେରି ଚାହୁଁଛନ୍ତି ମନେ କେତେ ଦୁଃଖେ,
ଚାହିଁ ଚାହିଁ ହସୁଛନ୍ତି,
ହସୁ ହସୁ ଲୁଚିବେ ଏଥଣି;
ଲୁଚୁ ନ ଲୁଚୁଣୁ ଯେଣୁ
ଦର୍ପଣସର ଛଟିବି ଶମ୍ଭର,
ନ ଦେଖି ତାହାଙ୍କୁ ସେହ ବସିବ ଅଜାଣା;
ରଜନୀ ରଜନୀ ବୋଲି ପଡ଼ିଲା ଚହଳ,
ରଜନୀରେ ଏ ପ୍ରଦେଶ ବଡ଼ ସଙ୍କୁଳ;
ବନ୍ଧୁହୁଙ୍କ ଛାଡ଼ିଲୁ ନଗର,
ଅନ୍ୟଗ୍ରାମେ ନ ପହଞ୍ଚୁ ହେଲା ଦିନ ଶେଷ,
ଭଲ ଗତି ନ ଦେଖଇ କିଛି,
ଅଗତ୍ୟା ଏ ବଣା ଅଞ୍ଚଳି
ଯାପିବାକୁ ହେବ ଏହୁ ସ୍ଥଳେ ।

ରତ୍ନ—ଚିନ୍ତା କିସ ଜୀବନେଶ ?
ଗ୍ରାମରେ ବା କିବା ପ୍ରୟୋଜନ,
ସଙ୍ଗେ ଅଛୁ କଣ୍ଟାର ସମ୍ବଳ;
ରମ୍ୟସ୍ଥଳୀ, ବନସ୍ଥଳୀ,
ସ୍ଥଳେ ଏଥି କରିବା ଶୟନ;
ମୃଦୁ ମୃଦୁ କୁଞ୍ଜ କୁଞ୍ଜ ଚଳିଲା ଗାନ୍ଧନ
ଶୁଣୁ ଶୁଣୁ ହୋଇଯିବ ନିଶା ଅବସାନ ।

ସୁଦା—ତାହାହିଁ ଏକାନ୍ତ ଗତି ।
ଭାବୁଥିଲି ମନେ ମନେ—ଗହନ କାନନେ,

ବନ୍ୟ ଭଲ୍ଲୁକ ବ୍ୟାଘ୍ର କରନ୍ତି ନିବାସ,
ରଜନୀରେ ହିଂସ୍ରଜନ୍ତୁ ଅତ୍ୟନ୍ତ ପ୍ରବଳ ;
କୋମଳହୃଦୟା ! ତାଙ୍କ ଆଗମ ଏ ସ୍ଥଳେ
ନୁହଇ ଉଚିତ କିଛି ;
ଦେଖି ତାଲେ ଭଳିବ ସୁନ୍ଦରି !

ରତ୍ନ—ପ୍ରାଣନାଥ ! ନ ଭାବବେ ସେ ଭାବନା ;
ଏ ଅଧୀନା ନୋହେ ଭଇବାର,
ଆବାଲ୍ୟକାଳରୁ ବାସୀ
ପର୍ବତରା ହିଂସ୍ରଜନ୍ତୁସହ,
ଭଲ୍ଲୁକ ବନ୍ୟ ବ୍ୟାଘ୍ର
କ୍ରୀଡ଼ା ପୁତ୍ତଳିକା ଏ ଦାସୀର,
ଏକାକୀ କାନନେ ବ୍ୟାଘ୍ର କରିଛି ବନ୍ଧନ,
ଭଲ୍ଲୁକ ବନ୍ୟ କେତେ ଧରି କୌତୁହଳେ
ନଚାଉଥିଲି ମୁଁ ତାଙ୍କ ଯୋଡ଼ି ନାନା ତାଳ ।

ସୁଦା—ଏ କେମନ୍ତ କଥା ସଖି !
ନାଗି ତୁମ୍ଭେ ଥିଲ ଅନ୍ତଃପୁରେ,
ଏ ସକଳ କରୁଥିଲ କହି କେତେବେଳେ
କହ ବେଗେଁ ଶୁଣେ ମୁଁ କୌତୁକ ।

ରତ୍ନ—ଏ ପିଶାଚୀ ଜୀବନ ବୃତ୍ତାନ୍ତ
ଅତିବ ରହସ୍ୟ କଥା,
ଶୁଣିବ ସେ ସବୁ ନାଥ ? ଶୁଣ ତେବେ—
ପାଲିକୁଞ୍ଜନାମେ ଏକ ଥିଲା କ୍ଷୁଦ୍ର ରାଜ୍ୟ,
ନରସିଂହନାମେ ତହିଁ ରାଜା,
କାଳକ୍ରମେ ଶତ୍ରୁ ହସ୍ତେ ହେଲେ ସେ ନିହତ,

ପତ୍ନୀ ତାଙ୍କ ହେଲେ ସହମୃତା,
ମୃତ୍ୟୁକାଳେ କନ୍ୟା ଏକ ଥିଲା ଛୋଟେ ତାଙ୍କ,
ଅତି କ୍ଷୁଦ୍ର, ବର୍ଷ ଦୁଇ ହେବ ମାତ୍ର,
ଅର୍ପିଗଲେ ଗୋବର୍ଦ୍ଧନ କରେ ସେ କନ୍ୟାକୁ,
ଗୋବର୍ଦ୍ଧନ ମନ୍ତ୍ରୀ ଥିଲେ ତହିଁ ;
ନିଜ ଭାର୍ଯ୍ୟା ପୁତ୍ର ଆଦି ସହ ସେ ତତ୍କ୍ୟାତ
ଘେନି ଗୋବର୍ଦ୍ଧନ ଯାଇ ପଶିଲେ କାନନେ,
ନିଜ କନ୍ୟା ସମ ତାକୁ ପାଳିଲେ ଅରଣ୍ୟେ,
ଶିଖାଇଲେ ଲେଖା ପଢ଼ା ପୁତ୍ରଗଣସହ,
ଶିଖାଇଲେ ମଲ୍ଲକ୍ରୀଡ଼ା, ଅସ୍ତ୍ରାଦି ଚାଳନ ।
ନାନାବିଧ ସମର କୌଶଳେ
ତାକୁ କରିଣ ଦୀକ୍ଷିତା
ଗୁଣୀନାମେ ଅଧିଷ୍ଠିତା କଲେ ନିଜପୁରେ,
ପୁତ୍ରଗଣେ ରହାଇଲେ ଆଜ୍ଞାରେ ତାହାର ;
ଆବାଲ୍ୟରୁ ପାଳିଥିଲେ ଯେଣୁ ଗୋବର୍ଦ୍ଧନ
ତେଣୁ ସେହୁ ବାଳିକାଟି
କରେ ତାଙ୍କୁ ପିତା ସମ୍ବୋଧନ ।
ଗୋବର୍ଦ୍ଧନ ପ୍ରଥମରୁ ଥିଲେ ବଡ଼ ସାଧୁ,
ସତ୍ୟନିଷ୍ଠ, ନ୍ୟାୟପରାୟଣ ;
କିନ୍ତୁ କେଉଁ ଅଭିସନ୍ଧି ପାଇଁ ମନେ ମନେ
ଶେଷକୁ ସେ ରତ ହେଲେ ତସ୍କର ବୃତ୍ତିରେ
ନ ଜାଣେ ମୁଁ ସେ ସକଳ କଥା,
ସେ ବୃତ୍ତି ସାଧନେ ନାଥ !
ସହାୟିଣୀ କଲେ ସେ କନ୍ୟାକୁ,

ଏହୁକାଳେଁ ପିଶାଚୀକୁ ଦେଖିଲେ ଅପଣ,
ଜାଣ ସବୁ ଜଳେ ତହିଁ ଅନ୍ତେ ;
ଅଭାଗିନୀ ସେହୁ କନ୍ୟା,
ଅକ୍ଷେପ ଜୀବନୀ ନାଥ ଏହୁ ଏ ଦାସୀର ।

ସୁଦା—(ସ୍ୱଗତ) ଅଶ୍ଚର୍ଯ୍ୟ ଏ ଉପାଖ୍ୟାନ !
ଏ ରମଣୀ ନୁହନ୍ତି ସାମାନ୍ୟ !
(ପ୍ରକାଶ୍ୟ) ଦେବୀ ତୁମ୍ଭେ, ବାସ୍ତବରେ ଦେବୀ ତୁମ୍ଭେ
ଏ ଅଧମ ଲୋଟେ ପଡ଼ି ପଦ ପ୍ରାନ୍ତେ ତବ ।

ରତ୍ନ—କ୍ଷମାକର ଜୀବନେଶ !
ଶ୍ରୀଚରଣେ ଭିକ୍ଷା ଏ ଦାସୀର
ନ ଧରିବେ ମୁଖେ ଏ ବଚନ ।
ହୋଇଅଛ ପଥଶ୍ରାନ୍ତ ତୁଲି ଦଳଯାକ,
ଅସ, ବସ, ହୁଅ ଶାନ୍ତ, ଅଣେ ମୁଁ ସଲିଳ,
ରଜନୀରେ ଗୃହ ଆଜି ଏହୁ ତରୁ ତଳ ।

(ଉଭୟଙ୍କର ଉପବେଶନ)

(ପଟ୍ଟକ୍ଷେପ)



## ତୃତୀୟ ଅଭିନୟ ।

### ପ୍ରଥମ ଦୃଶ୍ୟ—ପଲ୍ଲିଗ୍ରାମ

(ଜଣେ ଗୋପାଙ୍ଗଣୀର ଦଧି ବିକ୍ରୟାର୍ଥ ପ୍ରବେଶ)

ଗୀତ

ଆସ ଗୋ କେହୁ ଦହି ନେବ ଗୋ
ଦହି ନେବ କେହୁ ଦୁଧ ନେବ
ଆସ କେ କିଣିବ ଆଗହୋଇ
ସରିଗଲେ ପୁଣି ନୁହେବ ।
ଦହି ଅଛି ଦୁଧ ଅଛି
ଛେନା ଅଛି ସରଂ ଅଛି
ନହୁଣୀର ମୋର ଅପାର ମହିମା
କହିଲେ କି ଗୁଣ ନ ସରିବ
ସୋଲଦହି ମୋର ଜର କାଟେ
କସାଦହିରେ ମୋ କାଶ ହଟେ
ମୋ ଦହି ଖାଇଲେ କଣ ବ୍ରୁଅଗ୍ନୁଣୀ
ମୁଣ୍ଡରୁ ଅରୁଚି ଛାଡ଼ିଯିବ ।

ଗୋପା—ଦହି ନହୁଣୀ, ଦହି ନହୁଣୀ, ନିଅ ଗୋ ଦହି ନହୁଣୀ ।
ଦହି ନିଅ ଗୋ ; ଛେନା, ସର, ଘିଅ, ଦୁଧ, ନେବ ଗୋ।
ଦହି ନହୁଣୀ । (ଜଣେ ଗ୍ରାମ୍ୟରମଣୀର ପ୍ରବେଶ

ଗ୍ରାମ୍ୟର—ମାଉସି ଦହି ଆଣିଛୁ ? ଅଣ ଅଣ । ଅଧଲାକର ଦେଇଯା ।
(ଗୋପାଙ୍ଗଣୀର ଉପବେଶନ)

ଗୋପା—କେ ଯାଗା ଅଣ, ଅଧଲାକର ନରୁ ? ଅଧଲାକର କଣ
ନରୁମ ? ପଇସାକର ହେଲେ ନେଇ ଥାନ୍ତୁ

ଘାସୀଆର ;—ନାହିଁ ପଇସାର ନାହିଁ, ଦହିଟା କାହିଁକି କେମିତି ହଉଚି, ଖାଇ ଖାଇ ହେଲା ନାହିଁ, ମୁଁ ଭାବୁଥିଲି ମାଉସୀ ଅପନ୍ତାରା ଦହି ଟୋପା ନଅନ୍ତୁ । ତୁ ଯୋଗୁଁ ମାନଅ ଅତି ପଦାସ୍ତ ଗଲୁ ।

ଗୋପା—ନେ ଦହି ନେ, ପଚେଇ ଖାଇବେ, କାଲିକି ଦହି ପୁରା ହେଇଁ ଯିବ ।

(ଅନ୍ୟ ଏକ ରମଣୀର ପ୍ରବେଶ)

୨ୟ ରମ—ମାଉସୀ ଆଇଚନ୍ତି ? ସେ ଦିନ ମାଉସୀ ଯୋଉ ଦହି ଦେଇ ଯାଇଥିଲୁ—ସେ ଫେର ଏଡ଼ିକି ଅମ୍ଳିଲା—ଛିଁ—ହୁଁ—ହୁଁ ମୁଣ୍ଡ ବାଳ ଉଠେଇ ନେଇ ଯିବ, ମୁଁ କେତେ ଗାଳି ଖାଇଚି, ଆଜି କେମିତିକା ଦହି ? ଭଲ ଦହି ?

ଗୋପା—ନାହିଁ ଭଲ ଦହି (ଦଧି ପ୍ରଦର୍ଶନ) ଦେଖ, ଗୃହିଣୀଙ୍କର ନେ, ନ ହେଲେ ରଖିଥା, ଖାଇପାର କାଲି ପଇସା ଦବୁ ।

(ଅନ୍ୟ ଏକ ରମଣୀର ପ୍ରବେଶ)

୩ୟ ରମ—ମାଉସୀ ଛେନା ଆଣିଛୁ ? କେମିତିକା ଛେନା ?

ଗୋପା— ଛେନା ? ଅଛି ଛେନା, ନେ, ଛେନା ନେ, ଘିଅ ନେ, କଣ ନବୁ ନେ । (ଅନ୍ୟ ଏକ ରମଣୀର ପ୍ରବେଶ)

୪ର୍ଥ ରମ—ଘିଅ, କେମିତିକା ଘିଅ ଅଛି ?

ଗୋପା—କିଏ ମେ ? ସାଆନ୍ତାଣି ? ଘିଅ ନବ ? ଆସ ଛୁଅ । ଦେଖ, (ଘୃତ ଭାଣ୍ଡ ପ୍ରଦାନ) ସାଆନ୍ତାଣୀଙ୍କ ହାତରେ କୋଉ ଦିନ୍ ଛତି ନାହିଁ ; ହାତୁଟି ସୁନହାତ, ସାଆନ୍ତାଣୀଙ୍କ ହାତ ଲାଗିଲେ ମୋ ପସରା କୁଆଡ଼େ ଦଣ୍ଡରୁ ନ ଥିବ । କେତେକର ଦେବ ।

୪ର୍ଥ ରମ—ଝଙ୍କାର (ଗୋପାଳୁଣୀ ପୁତ୍ର ମାପେ ନିଯୁକ୍ତ ।)

୩ୟ ରମ—ମାଉସୀ ଦହି ବିକି ଯାଉଥିବୁ ରଜାଘର ଖବର କଣ ଶୁଣିଥିଲୁ ?

ଗୋପା— ମୁଁଲୋ ଝିଅ ଛୋଉଦନୁ ସାହିକୁ ଯିବାକୁ ନାହିଁ ; ସାଇରେ ସବୁ ଯାଇ ଥାନ୍ତି, କହୁଥାନ୍ତି ରଜା ଲୁଅଟେ ପୁଅଟିଏ ପାଇଛନ୍ତି ସେଇ ରଜା ହବ ।

୩ୟ ରମ—କେମିତି ପାଇଲେ ? କଣ ଶୁଣିଥିଲୁ । ଲୁଅଟେ କହୁଛନ୍ତି ବଣରେ ପଡ଼ିଥିଲା ?

୧ମ ରମ— ରଜାଙ୍କୁ ସପନ ହେଉଥିଲା—ସାହେ ଚୋଉ ବନସ୍ତ ଅଛି—ସେଇ ବନସ୍ତକୁ ଯିବୁ ସେଇଠି ଯାହାକୁ ପାଇବୁ ସେଇ ଏଠି ରଜା ହବ ।

୨ୟ ରମ— ଲୁଅଟେ ଗଛ ମୂଳରେ ଫୁଲ ବିଛଣା ହେଉଛି, ସେଥିରେ ସେ ପୁଅ ଶୋଇଛି ମୁଣ୍ଡଉପରେ ଲୁଅଟେ ସପ୍ତଫଣୀ ନାଗ—ମୁହଁରେ ଖରା ପଡ଼ୁଛି ବୋଲି—ମୁହଁକୁ ଉଢ଼ାଇ ଜଳ ଛତା ଧରିଛି । ଲୁଅଟେ ସବୁ ଯେମିତି ପହଞ୍ଚିଲେ—ପହଞ୍ଚି ନମ୍ର ହୋଇଁ ଗୋଡ଼ତଳେ ପଡ଼ିଲେ—ନାଗ ଲୁଅଟେ ସେମିତି ପାତାଳକୁ ପଶିଗଲା ।

ଗୋପା—ପୁଅ ବୋଲି କଣ ? କୋଡ଼ିଏ ବରଷର ପୁଅ ! କି ଶୋଭିକର !

୧ମ ରମ—ରଜା ହବ ବୋଲି ବିଧାତା ସେମିତି ସାହୁ ଘଟଣା କରି ଗଢ଼ିଛନ୍ତି ।

୪ର୍ଥ ରମ—ଅଜିତ ଭିଏ କହୁଥିଲା ସେ ରଜା ଲୁଅଟେ ତାଙ୍କ ଜଗରୁ ପାଇ ଅଛିନ୍ତି ବୋଲି ।

ଗୋପା—ସାଅନ୍ତାଣି ! ଏତେବଡ଼ ପୁଅ ଭିଏ ପାଇବାକୁ ଦରମ ? ତାହା ସତ ବଳିବ ।

ଜମ୍ବୁ ଉମ—ଅ—ବାଉଅ କଥା— । ଅଦ୍ଭୁତଛ କଏ କଦ୍ରୁସ୍ଥଙ୍କ ଯେ
ଉଜାଙ୍କର ଯୋଉ ବଡ଼ ଯେମା ସାଅନ୍ତାଣୀ ଅଛନ୍ତି ସେ
ଲୁଅଡ଼େ ଉନ୍ନବିଂଉଷ ହେଲା ବନସ୍ତରେ କୋଉଠି
ମାହାଦେବଙ୍କ ଅଛନ୍ତି, ସେଇଠିଁକି ସଁବାରକୁ ସଁବାର
ଗାଧୋଇ ବୁଡ଼ ପାଦ୍ଧକର ମାହାଦେବ ପୂଜିବାକୁ ଯାନ୍ତି ।
ଦନେ ଲୁଅଡ଼େ ଉଇବାର ଦନ ଗୃଉରେ ଶୋଇଛନ୍ତି
ଗୃଉ ଅସି ପାହାନ୍ତବ ଡ଼ିଇଲାଣି । ଗୋଟିଏ ବୁଢ଼ା ବାମ୍ଭୁଣ
ଅସି ସପନରେ କହୁଚ ମା ଶ୍ରୋଇକୁ କାହିଁକି ? ଉଠ,
କଅଣ ଅନ୍ନ ଅଣ, ଖାଇବାକୁ ଦେ, ତୋ ହାତରେ
ଯାହା ଖାଇଥାଏଁ ସେଇଅ, ଅଠଦନକୁ ଅଠଦନ
ଉତେଇ ଅନୈଇ ବସିଥାଏଁ, ତୋ ହାତରେ
ଖାଇଲେ ମୋ ମନଶାନ୍ତି ହୁଏ; ମୁଁ ବଡ଼ ଖୁସି
ହେଲେଣି, ତୋ ମନବାଞ୍ଛା ପୂର୍ଣ୍ଣହେବ, ମୋ ପାଖରେ
ଅଜି ଯାହାକୁ ଦେଖିବୁ ତୁ ତାକୁ ବରଣମାଳା ଦବୁ ।
ଜେମା ସାଅନ୍ତାଣୀଙ୍କ ନଦ ଭଙ୍ଗିଗଲା ଦେଖିଲେ କେହ
ଲୁଅଡ଼େ ନାହାନ୍ତି—ମାଲୋ ମୋ ଦହ ସିଡେଇ
ଉଠୁଚ । ଲଣ୍ଡଭଣ୍ଡ କହ ସିନାନ କର ନହୁଣି, କଷାଦୁଧ
ପାକଲା କଦଲ, ଲେଂଚ, ସ୍ପଗ ନଲା ଯେତେକ ସରଜାମ
ଲୋଡ଼ା ସବୁ ନେଇ ଯାଇ ପଦ୍ମସ୍ଥଳୀ ବେଳକୁ ଲୁଅଡ଼େ
ଇଏ ବସିଛନ୍ତି, ଅଙ୍କ ଗଳାରେ ବରଣମାଳା ପକେଇ
ଦେଇ ଭୋଗରାଗ କରେଇ, ସବୁ ଗୃଇ ଅସିଲେ ।
ସେଇଠୁ ଫେର ମନ୍ତ୍ରୀଗଲେ, ହାତି ଗଲା, ଘୋଡ଼ା ଗଲା,
ଲୋକ ବାଜ ସଲ୍ଟଣ ସବୁ ଯାଇଁ ତାଙ୍କ ହାତରେ

ନଗେଇ ସେନ ଅସିଲେ । ବଡ଼ ସେମା ବାହାହେବ
ସେ ଏଠି ରଜା ହେବେ ।

୨ୟ ଜନ—ହିଁ ଇଆବର କହୁଚନ୍ତି, ତାଙ୍କୁ ସେମିତି ସାତେ ସପନ
ହେଇ ନ ଥିବ କ ? ଯେ ରଜା ହୁଅ ତୋତେ
ନର ଭଇବାକୁ ଅଜଡ ଲୁ ଅଜି ଏଇଠି ଏମିତ
ବସିଥିବୁ ।

ଗୋପା—କେଜାଣି ଲୋ ହୁଅ କେତେ ଲୋକ କେତେ କଥା
କହୁଛନ୍ତି କୋଉ କଥା ସତ ତା କିଏ ଜାଣିଚ, ଲୁ
ଦହିଲୁ ପଗ୍ସ ? କେତେକର ଦେବ ?

୨ୟ ଜନ—ପଇସାକର (ଗୋପାଳୁଣୀର ଦଧି ପ୍ରଦାନ)

୩ୟ ଜନ—ଏ ସବୁ ଦେବତା ଇଅଁଣ, ଇଏ ଅଉ କଣ ମଣିଷଙ୍କ
କଥା ହେଇଚ ?

୪ର୍ଥ ଜନ—କେଜାଣି ଏଥିରେ କୋଉ କଥା ସତ ବୋଲି କହିବୁ
ନା କୋଉ କଥା ମିଛ ବୋଲି କହିବୁ । ରଜାଘର କଥା
ଯେ ଆଖିରେ ଦେଖିଥିବ ସେଇ ଠିକଣା କହିବ ।

ଗୋପା— ଭଉ ମା ଭାଉ, ମୁଁ ଅସୁମ୍ପିଁ, ମତେ ଡ଼ର ହଉଚ, ଦଢ
ଗୁଡ଼ା ଯମା ବଳ ନାହିଁ ଛେନା ଗୁଡ଼ା ସେମିତ ଅଛି,
ଦଉ ଅଗ ଦବଡ ମୁଁ ଯାବି ।

୪ର୍ଥ ଜନ—ପଇସା ଉହଲ ଅଉଦଲେ ନେଇଯିବୁ ।

ଗୋପା—ଅଉଦଲେ ? ହଉ ଯାଉଚ (ଜନମାନଙ୍କର ମୂଲ୍ୟ ପ୍ରଦାନ ଓ
ଗୋପାଳୁଣୀର ପ୍ରସ୍ଥାନ)

୪ର୍ଥ ଜନ—ସବୁ ମିଛ । ସେଇ ସେମାସାଅନ୍ତାଣୀଙ୍କ ଘର ପାଇକ
କଥା ଯାହା କହୁଛନ୍ତି ସେଇ କଥା ସତ । ସେ ଏକା
ସେମିତ ମାହାଦେବ ପୂଜା କରୁଥିଲେ ।

୩ୟ ଭଟ—କେଉଁଠିଲେ ଲୁଣ୍ଠି—ଯାହା ହୋଇଥିବ ସବୁ ଶୁଣାହେବ । ସେ ଭଙ୍ଗାହେବ ତଳେ ଜଣାଯିବ । ମୁଁ ଯାଉଚିଲେ ପିଲ୍ଲଟାକୁ ଏକା ଛାଡ଼ିଦେଇ ଆଇଚି କାନ୍ଦୁଥିବ ।

(ସମସ୍ତଙ୍କର ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ—ନଗରର ଏକାଂଶ

(ଦୁଇଜଣ ପ୍ରହରୀଙ୍କଦ୍ୱାରା ଧୃତ ସୁଦାମ ଦଣ୍ଡାୟମାନ, ଦୁଇ ଜଣ ପ୍ରହରୀ ରୂପଧାରୀ ମନ୍ତ୍ରୀ ଓ ଏକଜଣ ପ୍ରହରୀର ପ୍ରବେଶ)

୧ମ ପ୍ରହ—ହଜୁର ଏଇ ହେ, ହାମଲୋକୋଁକୋ ସାମ୍ନେ ବହୁତ ଯୁଲମ କିୟା ହେ ।

୨ମ ପ୍ରହ—ହଜୁର ବଡ଼ା ବଦମାସ ; ହାମଲୋକ ଏତନା ଆଦମିକା ଦମ୍ ନିକଲ୍ ଗିଆଥା ।

୩ୟ ପ୍ରହ—(ଅତି କଷ୍ଟେ) ହଜୁର ! ହଜୁର ! ହାମାରା କମର ତୋଡ଼ ଦିଆଥା, ଦୋ ଦିନମେ ବୈଠାଦିଆ—ମେ କ୍ୟା କରୁଙ୍ଗା, ମେରା ବାଲବଚ୍ଚେ—

୪ର୍ଥ ପ୍ରହ—ହଜୁର ମେରା ଗର୍ଦ୍ଦନମେ—

ସୁଦା—ଛାଡ଼ ମୋତେ ଯିବ ମୁଁ ଚଳନ,
ଗୃହେଁ ଥିବେ ମୋ ସଙ୍ଗିନୀ ପଥେ ଏକାକିନୀ,
ପାପିଷ୍ଠ ପାମର ବୃନ୍ଦ !
କାହିଁ ମୋତେ ଅକାରଣେ କର ଲଣ୍ଡଭଣ୍ଡ ?

ମନ୍ତ୍ରୀ—(ସ୍ୱଗତ)
ଦସ୍ୟୁ ଏହି ! ନହେ ଏ ପ୍ରତ୍ୟୟ ଦେଖି,
ନହେ କେହି ହେବ ସେହି ଜନ୍ମା ଅଦ୍ଭୁତ,
ଛଦ୍ମବେଶେ ହୋଇ ଭ୍ରମଣ ଏଥି,

(ପ୍ରକାଶ୍ୟ) କିଏ ତୁମ୍ଭେ ? କିବା ପରିଚୟ ତବ ?
କି ମାନସେ ଆଗମ ଏ ଦେଶେ ?

୨ୟ ପ୍ରହ—ହଜୁର ହାମ ଲୋକ ଏଇବାର୍ ପୁଛା, ଆଉର ହଜୁରକା
ସାମ୍‌ନେ ଲେଯାନେ ମଙ୍ଗା, ଉସିସେ ହାମଲୋକୋଙ୍କା
ସାଥ୍‌ମେ ଇଏ ଦଙ୍ଗା ହାଙ୍ଗାମ ହୁଆ ହେ ।

୧ମ ପ୍ରହ—ହଜୁର ଇସ୍କୋ ଅଲବତ୍ ଚୋର ଡକାଏତ ଦଲକା
ସରଦାର ହୋଗା ।

ସୁଦା—କିବା ପ୍ରୟୋଜନ ତବ ପରିଚୟ ମମ ?
ପଥିକ ମୁଁ ଯିବି ପଥେ,
ମୋ ସହିତ ଅକାରଣ କିପାଁ ଏ ଆଗ୍ରହ ?
ଏ ଦେଶେ କି ଏହି ରାଜନୀତି ?
କିଏ ରାଜା ? ଆର୍ଯ୍ୟ ନା ଅନାର୍ଯ୍ୟ ?
କିବା ତାଙ୍କ ଧର୍ମନୀତି ?
ତୁମ୍ଭେ ଅବା କିଏ ରାଜାଙ୍କର
ଛାଡ଼ ମୋତେ ନକର ବିଳମ୍ବ ।

ମନ୍ତ୍ରୀ—(ସ୍ୱଗତ)—ଛଦ୍ମବେଶୀ ଅଦ୍ଭୁତ କିମ୍ବା ଏ ବ୍ୟକ୍ତି,
ଛାଡ଼ିବ ଏହାକୁ ଯେବେ
କର୍ମେ ଫଳ ହେବ ଅମଙ୍ଗଳ

(ପ୍ରକାଶ୍ୟ) ମନ୍ତ୍ରୀ ଆମ୍ଭେ ରାଜାଙ୍କର
ନଗରରେ ଶାନ୍ତିରକ୍ଷା ଭାର ଆମ୍ଭଠାରେ
ମଧ୍ୟେ ମଧ୍ୟେ ଦସ୍ୟୁଗଣ କିମ୍ବା ଅପରୂପେ
କରନ୍ତି ଭ୍ରମଣ ଏଥି ଅବି ଛଦ୍ମବେଶେ ;
ଲଭିଲେ ସୁଯୋଗ କେବେ
ନାନାରୂପେ ନାନା ଅତ୍ୟାଚାରେ

ଉତ୍ପୀଡ଼ିତ କରନ୍ତି ପ୍ରଜାଙ୍କୁ,
ଧର୍ମଜ୍ଞ ନୀତିଜ୍ଞ ହିନ୍ଦୁ ମହାପୁଣ୍ୟବନ୍ତ
ଆର୍ଯ୍ୟକୁଳ କେତୁ ମହାରାଜ ;
ହୁଅଇ ଅ[illegible]ାତ ତାଙ୍କ ।
ତେଣୁ ଏହି ଅଛି ଆଜ୍ଞା
ଅଜ୍ଞାତ ଅପରିଚିତ ଦେଖିଲେ ନଗରେ,
ଛଦ୍ମବେଶୀ ବୋଲି ଯେବେ ହୁଅଇ ସଂଶୟ,
ବନ୍ଦ ତାଙ୍କୁ କରି କାରା ଗୃହେ,
ରାଜଦରବାରେ ତାଙ୍କ ହୁଅଇ ବିଚାର ;
ଦ୍ୱିଗସ୍ତ୍ରେ ପ୍ରହରୀଗଣ
ଶାନ୍ତିରକ୍ଷା କାର୍ଯ୍ୟେ ନିଯୋଜିତ
କର୍ତ୍ତବ୍ୟପାଳନେ ତାଙ୍କ କରନ୍ତେ ଯତନ
ହଇଅଛି ଏ ଦଶା ତାଙ୍କର,
ଏହେତୁ ବିଚାର ତବ ହେବ ଦରବାରେ,
ଦରବାର ବସିଯାଏ
ବନ୍ଦୀଗୃହେ ସ୍ଥାନ ଆପଣଙ୍କ ।

ସୁଦା—ଏହି ତବ ହେଲା ସୁବିଚାର ?

ମନ୍ତ୍ରୀ—ନାହିଁ ଏଥି ମୋର କିଛି,
କର୍ତ୍ତବ୍ୟ ମୋହର ଏହି,
ନ ହେଲେ ଅପଣେ ମୁହିଁ
କର୍ତ୍ତବ୍ୟ ଅବଜ୍ଞା ଦୋଷେ ହେବି ଅପରାଧୀ ।

(ପ୍ରହରୀମାନଙ୍କ ପ୍ରତି)

ନିଅ ତାଙ୍କୁ ନ କର ବିଳମ୍ବ ।

ପ୍ରହରୀଗଣ—ହଜୁରି ଆସ ଲେଯାଉଛେହେଁ, (ସୁଦାମଙ୍କ ପ୍ରତି)
ଚଳନ୍ତୁ ।

ମନ୍ତ୍ରୀ—ସଯତନେ ସେନଯାଅ,
ନେଇ ତାଙ୍କୁ ଛଡ଼ କାରଗୃହେ,
କହ ତଥା କାରଗୃହ ଅଧ୍ୟକ୍ଷଙ୍କୁ
ଆହାର ଶୟନ ଆଦ
କରାଇବେ ଯୋଗ୍ୟ ବନ୍ଦୋବସ୍ତ ତାହାଙ୍କର ।
(ପ୍ରସ୍ଥାନ)

ପ୍ରହ—ଚଲୋ ଅବ୍ ଚଲୋ
ସୁଦା——(ସ୍ୱଗତ) ହା ଅଦୃଷ୍ଟ ଏହ ମୋର ସ୍ୱଳ୍ପ କର୍ମ !
ଭାଇରେ ସୁବଳ ! କାହିଁ ଗଲୁ !
କେ ଦେବ ବାରତା ତୋର ।
ପ୍ରିୟତମେ ! ତୁମ୍ଭ ଗତି କି ହେବ ଏକ୍ଷଣି !
ନ ଭାଗ୍ୟର ଏ ଅଧମ ସଙ୍ଗେ ହେଲ ସଙ୍ଗୀ,
ତରୁତଳେ ଛଡ଼ ଅହା
ବନ୍ଦୀହେଲ ଆସି କାରାଗାରେ,
ଏ ସମ୍ବାଦ କେ ଦେବ ତୁମ୍ଭଙ୍କୁ !
କାନ୍ଦ କାନ୍ଦ ଯିବ ଦନ,
ଖୋଜି ଖୋଜି ଅହ୍ନଜନେ ହେବ ଶୋକାକୁଳା ।
ପ୍ରହରୀଗଣ—ଚଲୋ ଯଲ୍ଦିସେ ଦେର ମତ୍‌କରୋ
(ସମସ୍ତଙ୍କର ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ—ପୁଷ୍କରଣୀ ଘରେ ରାଜପଥ

(ଜଳସ୍ତବକଙ୍କୁ ଦୁଇଜଣ ଗ୍ରାମ୍ୟସେବକର ପ୍ରବେଶ)

୧ମ ବ୍ୟକ୍ତି—କି ସମ୍ବାଦ ଦଣ୍ଡବତ ଦଣ୍ଡବତ । ଏତେବେଳେ କୁଆଡ଼େ? କୁଆଡ଼େ ଯାଇଥିଲ ? ଆଉ ଏତେବେଳଟାରେ କୋଉଠିକି ବାହାରିଛ ?

୨ୟ ବ୍ୟକ୍ତି—ନାହିଁ ଯଉଠ ଟିକିଏ ଘରେର କାମ ଅଛି, ଘର ପାଖରେ ଗୋଳି ଥିଲି, କହଲେ କେଉଁଠିକି ଯାଇଛନ୍ତି, କହ କହ ବାହାର ଥିଲି ।

୧ମ ବ୍ୟକ୍ତି—ହଉ ହଉ ଯିବ, ଏତେବେଳ ହେଲାଣି, ଗାଧୋଇ କର ଯିବ, ଏତେବେଳେ ମଣିଷ ଯାନ୍ତି ? ଇଥନା ଗୋଟା କଥା ? ଚୁଲ ଚୁଲ ଫେର, କୁଆଡେ ଯାଇଥିଲ?

୨ୟ ବ୍ୟକ୍ତି—ଆରେ ସେ କଥା କଣ ପଚାରୁଛ, ମୁଁ ଏ ଲୋକାଙ୍କ କଥାରେ ପଡ଼ି ଅକାରଣରେ ପାଞ୍ଚଦିନ ହେଲା କେତେ ଆଡେ ବୁଲି ବୁଲି ଆଜି ଫେରୁଛ ।

୧ମ ବ୍ୟକ୍ତି—କଣ କାହିଁକି ଏମିତ—

୨ୟ ବ୍ୟକ୍ତି—ଆରେ ସେ ରାଜାଙ୍କୁ ଯୋଉ ସପନ ହୋଇ ନ ଥିଲା ସେ—ଅରଣ୍ୟରେ ଯାଇ ଦେଖିବୁ—

୧ମ ବ୍ୟକ୍ତି—ହଁ ହଁ ସେ—

୨ୟ ବ୍ୟକ୍ତି—ହଁ ସେଠୁଂ ରାଜା ଆଣି—ଜେମା ପାଖନ୍ତ୍ରାଣୀଙ୍କୁ ବାହା କରେଇ—

୧ମ ବ୍ୟକ୍ତି—ହଁ-ହଁ

୨ୟ ବ୍ୟକ୍ତି—ହଁ-ହଁ

୧ମ ବ୍ୟକ୍ତି—ହଁ ରାଜା କରେଇବ

୨ୟ ବ୍ୟକ୍ତି—ହଁ କରେଇବ